ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

# ଟଲଷ୍ଟୟ୍ କାହାଣୀ

[ ତୃତୀୟ ଭାଗ ]

ଅନୁବାଦକ
ଅଧ୍ୟାପକ ଶ୍ରୀଧର ଦାସ



[ This book has been printed in paper made available by the Government of India at concessional rate.]

ପ୍ରକାଶକ :

ଅଭିରାମ ମହାପାତ୍ର

**ଗ୍ରନ୍ଥମନ୍ଦିର**

କଟକ-୨ : ବ୍ରହ୍ମପୁର-୧

ମୁଦ୍ରକ :

**ଜ୍ୟୋନା**

ଓଡ଼ିଆ ବଜାର; କଟକ-୨

ପ୍ରଥମ ମୁଦ୍ରଣ

ମେ, ୧୯୭୬

ମୂଲ୍ୟ : ଟ ୨.୯୦

# ସୂଚୀ

# ଯହିଁ ପ୍ରେମ, ତହିଁ ଈଶ୍ୱର

ଗୋଟିଏ ସହରରେ ମାର୍ଟିନ ବୋଲି ଜଣେ ମୋଚି ବାସ କରୁଥିଲା । ତାର ଗୋଟିଏ ମାତ୍ର କୋଠରି; ସେଥିରେ ଗୋଟିଏ ଝରକାବାଟେ ଚାହିଁଲେ ସହର ରାସ୍ତା ଦେଖାଯାଏ । ରାସ୍ତା ଉପରେ ଯାଉଥିବା ଲୋକଙ୍କର ଅଣ୍ଟାଠାରୁ ଉପର ଅଂଶଟି ଦେଖାଯାଏ ନାହିଁ; କେବଳ ନିମ୍ନ ଅଂଶଟି ଦେଖାଯାଏ । ଲୋକଙ୍କର ପାଦରେ ଥିବା ଜୋତାକୁ ଦେଖି ମାର୍ଟିନ ସେମାନଙ୍କୁ ଚିହ୍ନିପାରେ । ମାର୍ଟିନ ଅନେକ ବର୍ଷ ହେଲା ସେହି କୋଠରିରେ ରହୁଥିଲା; ଆଖପାଖର ଲୋକେ ଯେଉଁ ଜୋତା ବ୍ୟବହାର କରୁଥିଲେ, ତାହା ତାରି ହାତର ତିଆରି । କେତେ ଜୋତା ସେ ଥରେ ଦୁଇଥର ମରାମତି କରିଥିବ । ତେଣୁ ଯୋତାକୁ ଦେଖି ଲୋକଙ୍କୁ ଚିହ୍ନିବା ତା'ପକ୍ଷରେ ଅସମ୍ଭବ ନଥିଲା ।

ମାର୍ଟିନର କାମ ଯେପରି ସୁନ୍ଦର, ସେହିପରି ମଜଭୁତ; କେବେ-ହେଲେ ସେ ଖରାପ ଚମଡ଼ା ବ୍ୟବହାର କରେ ନାହିଁ । ତେଣୁ କେବେ-କେବେ ହେଲେ ତାର କାମର ଅଭାବ ନଥାଏ । ତାର ମଜୁରି ମଧ୍ୟ କମ୍ । ତେଣୁ ଲୋକଙ୍କର ତା'ଉପରେ ଅଟଳ ବିଶ୍ୱାସ ଥାଏ ।

ମାର୍ଟିନର ସ୍ୱଭାବ ଅତି ଭଲ ଥିଲା । ବୟସ ବଢ଼ିବା ସଙ୍ଗେ ଧର୍ମ କର୍ମ ଆଡ଼କୁ ତାର ମନ ବେଶି ଢଳିଲା । ଆଗରୁ ତାର ସ୍ତ୍ରୀ ତିନି ବର୍ଷର ଗୋଟିଏ ପୁଅକୁ ଛାଡ଼ି ଦେଇ ସ୍ୱର୍ଗକୁ ଚାଲିଯାଇଥିଲା । ସେତେବେଳକୁ ମାର୍ଟିନ ଆଉ ଜଣେ ପାଖରେ କାମକରି ମଜୁରି ପାଉଥିଲା—ପରେ ନିଜର ଦୋକାନ ଖୋଲିଥିଲା । ସ୍ତ୍ରୀର ମୃତ୍ୟୁ ପୂର୍ବରୁ ତାର ଆଉ କେତୋଟି ସନ୍ତାନ ମରି-ଯାଇଥିଲେ । ପ୍ରଥମେ ମାର୍ଟିନ ଭାବିଥିଲା, ପିଲାଟିକୁ ତାର ଭଉଣୀ ଘରକୁ ପଠାଇଦେବ ଓ ସେଠାରେ ତାର ଭଉଣୀ ପିଲାଟିକୁ ମଣିଷ କରିବ । କିନ୍ତୁ ପରେ ସେ ମନେକଲା ଯେ ଛୋଟ ପୁଅଟି ପର ଘରେ ରହିଲେ ତାର ମନରେ କଷ୍ଟ ହେବ । ତେଣୁ ସେ ତାକୁ ପାଖରେ ରଖିଲା ।

ପୁଅଟିର ନାମ କାପିଟନ । ମାର୍ଟିନ ତାକୁ ପାଖରେ ରଖି ଅଲଗା ଗୋଟିଏ ଘରେ ରହିଲା । ପିଲାଟି ବଡ ହେଲା; କାମ କରି ବାପକୁ ସାହାଯ୍ୟ କରିବାର ବୟସ ହେଲା । କିନ୍ତୁ ଠିକ୍ ସେତିକି ବେଳକୁ କାପିଟନ ସନ୍ନିପାତ ଜ୍ୱରରେ ପଡ଼ି ଆରପୁରକୁ ଚାଲିଗଲା । ମାର୍ଟିନ ସଂସାରରେ ଏକାକୀ ହେଲା ।

ଯେଉଁ ଦିନ ମାର୍ଟିନ ପୁଅକୁ କବରରେ ଶୁଆଇ ଘରକୁ ଫେରିଆସିଲା, ସେଦିନ ତାର ମନରେ ଭାରି ଦୁଃଖ ହେଲା । ତାର ସ୍ତ୍ରୀ ଯାଇଥିଲା, ଏବେ ପୁଅଟି ଚାଲିଯିବାରୁ ସେ ଈଶ୍ୱରଙ୍କୁ ଦୋଷ ଦେବାକୁ ଆରମ୍ଭ କଲା । ସେ ପ୍ରାର୍ଥନା କରି କହୁଥିଲା, 'ହେ ଈଶ୍ୱର, ମୋର ସ୍ତ୍ରୀକୁ ନେଇଥିଲ; ପୁଅଟିକୁ ମଧ୍ୟ ନେଲ । ଏ ବୃଦ୍ଧବୟସରେ କେବଳ କଷ୍ଟ ଦେବାପାଇଁ ମୋତେ ସଂସାରରେ ରଖି ତୁମର ଲାଭ କଅଣ ? ମୋତେ ମଧ୍ୟ ନେଇଯାଅ ।'' ଈଶ୍ୱରଙ୍କ ଦୟା ବିଷୟରେ ତାର ସନ୍ଦେହ ହେଲା । ଏପରିକି ସେ ରବିବାର ଦିନ ଗୀର୍ଜାକୁ ଯିବା ବନ୍ଦ କରିଦେଲା ।

ମାର୍ଟିନ ସହରରେ ରହୁଥିଲା ସତ; କିନ୍ତୁ ତାର ଜନ୍ମ ଏକ ଗ୍ରାମରେ । ସେହି ଗ୍ରାମର ଜଣେ ଲୋକ ତୀର୍ଥ କରିବାକୁ ଯାଇଥିଲା । ବାଟରେ ସେ ମାର୍ଟିନ ସାଥିରେ ଦେଖା କଲା । ଦୁହେଁ କଥାବାର୍ତ୍ତା ହେଲେ । ମାର୍ଟିନ ନିଜ ଗ୍ରାମର ସେହି ତୀର୍ଥଯାତ୍ରୀ ଆଗେ ନିଜର ଦୁଃଖ କାହାଣୀ କହିଗଲା । ଶେଷରେ କହିଲା, ''ଭାଇ, ସଂସାରରେ ରହିବା ପାଇଁ ମୋର ଆଉ ଟିକେ ଇଚ୍ଛା ନାହିଁ । ଈଶ୍ୱରଙ୍କୁ ମୋର ଏକ ମାତ୍ର ପ୍ରାର୍ଥନା, ମୋତେ ପୃଥିବୀରୁ ଆର ପୁରକୁ ନେଇଯାଆନ୍ତୁ ।''

ବୃଦ୍ଧଯାତ୍ରୀ କହିଲେ, ''ମାର୍ଟିନ, ତୁମେ ଏପରି କହିବା ଅନ୍ୟାୟ । ତୁମେ ଭାବୁଛ ଈଶ୍ୱରଙ୍କ ରାଜ୍ୟରେ ନ୍ୟାୟ ବିଚାର ନାହିଁ । କିନ୍ତୁ ଈଶ୍ୱରଙ୍କ କାର୍ଯ୍ୟ ନ୍ୟାୟ କି ଅନ୍ୟାୟ ସେ କଥା ବିଚାର କରିବାର ଅଧିକାର ଆମ ଭଳି ସାମାନ୍ୟ ମନୁଷ୍ୟର ନାହିଁ । ଆମର ଇଚ୍ଛା ଅନୁସାରେ ଈଶ୍ୱର କାର୍ଯ୍ୟ କରନ୍ତି ନାହିଁ, ତାଙ୍କ ନିଜର ଇଚ୍ଛା ଅନୁସାରେ କରନ୍ତି । ଈଶ୍ୱରଙ୍କର ଇଚ୍ଛା,

ତୁମର ପୂଅ ମଣିବ ତୁମେ ବଞ୍ଚିଥିବ । ତାହାହିଁ ହେବ ସମସ୍ତଙ୍କର ମଙ୍ଗଳ ପାଇଁ । ତୁମେ ହତାଶ ହୋଇପଡ଼ିଛ; ସେଥିର କାରଣ ହେଉଛି— ତୁମେ କେବଳ ନିଜର ସୁଖ ପାଇଁ ବଞ୍ଚିବାକୁ ଚାହଁ ।"

ମାର୍ଟିନ କହିଲା, "ମନୁଷ୍ୟ ନିଜର ସୁଖ ନ ଚାହିଁବ ତ କାହାର ସୁଖ ଚାହିଁବ ? ମନୁଷ୍ୟର ଜୀବନ ତ ନିଜ ପାଇଁ ।"

ବୃଦ୍ଧଯାତ୍ରୀ କହିଲେ, "ତୁମେ ଭୁଲ ବୁଝିଛ । ମନୁଷ୍ୟ ନିଜ ପାଇଁ ନୁହେଁ, ଯେଉଁ ଈଶ୍ୱର ତୁମକୁ ଏ ଜୀବନ ଦେଇଅଛନ୍ତି, ତାଙ୍କ ପାଇଁ ତୁମେ ବଞ୍ଚିବା ଉଚିତ ।"

ମାର୍ଟିନ କିଛି ସମୟ ଚିନ୍ତା କରି କହିଲା, "କିନ୍ତୁ ଈଶ୍ୱରଙ୍କ ପାଇଁ ବଞ୍ଚିବାକୁ ହେଲେ କ'ଣ କରିବାକୁ ହେବ ?"

ବୃଦ୍ଧ ଉତ୍ତର କଲେ, "ଈଶ୍ୱରଙ୍କ ପାଇଁ କିପରି ବଞ୍ଚିବାକୁ ହୁଏ ତାହା ଯୀଶୁଖ୍ରୀଷ୍ଟ ଦେଖାଇ ଯାଇଅଛନ୍ତି । ଖଣ୍ଡିଏ ବାଇବେଲ କିଣି ଆଣି ତାକୁ ପଢ଼ । ତୁମେ କିପରି ଜୀବନ କଟାଇବ ତାହା ସେଥିରୁ ଶିଖିପାରିବ ।"

ବୃଦ୍ଧଙ୍କର କଥା ଗୁଡ଼ିକ ମାର୍ଟିନର ମନକୁ ପାଇଲା । ସେଇଦିନ ସେ ବଜାରରୁ ଖଣ୍ଡିଏ ବାଇବେଲ କିଣି ଆଣି ପଢ଼ିବାକୁ ଆରମ୍ଭ କଲା । ପ୍ରଥମେ ସେ କେବଳ ପର୍ବଦିନ ଓ ରବିବାର ଦିନ ବାଇବେଲ ପଢ଼ିବ ବୋଲି ଭାବିଥିଲା । କିନ୍ତୁ ଦିନେ ଦୁଇ ଦିନ ପଢ଼ିବା ପରେ ତାର ମନ ହାଲୁକା ଲାଗିଲା; ଦୁଷ୍ଚିନ୍ତା ଦୂର ହୋଇଗଲା । ତେଣୁ ସେ ପ୍ରତି ଦିନ ବାଇବେଲ ପଢ଼ିଲା । ପଢ଼ୁ ପଢ଼ୁ କେତେବେଳେ ସେ ସେଥିରେ ଏପରି ମଜ୍ଜି ଯାଉଥିଲା ଯେ ତେଲ ସରି ଦୀପ ଲିଭିଯାଏ, ଅଥଚ ସେ ବହି ଧରି ପଢ଼ୁଥାଏ, ଅନ୍ଧାର ହେଲେ ବହି ବନ୍ଦ କରେ ।

ସେ ଯେତିକି ପଢ଼ିଲା, ସେତିକି ବୁଝି ପାରିଲା ଈଶ୍ୱର ତାହାଠାରୁ କ'ଣ ଚାହାନ୍ତି । କିପରି ଈଶ୍ୱରଙ୍କ ପାଇଁ ବଞ୍ଚିବାକୁ ହୁଏ, ତାହା ସେ ଜାଣିପାରିଲା । ତାର ହୃଦୟରୁ ଆଉ ଉଦ୍‌ବେଗ ବୋଧ ହେଲା ନାହିଁ । ସେ କହୁଥିଲା, "ହେ ଈଶ୍ୱର, ତୁମେ ମଙ୍ଗଳମୟ; ତୁମର ଜୟ ହେଉ । ତୁମର ଇଚ୍ଛା ପୂର୍ଣ୍ଣ ହେଉ ।" ଏହି ସମୟରୁ ମାର୍ଟିନର ଜୀବନଧାରା ଏକବାରେ ବଦଳିଗଲା ।

ପବେ ସ୍ଥରେ ମାର୍ଟିନ ବହି ପଢ଼ୁ ପଢ଼ୁ ବହୁତ ସ୍ଥ ହୋଇଗଲା । ସେ ପଢ଼ିଲା, "କେହି ଯଦି ତୁମର ଗୋଟିଏ ଗାଲରେ ଗୁଏ ମାରେ, ତାକୁ ଆର ଗାଲଟି ଦେଖାଇ ଦିଅ; କେହି ତୁମ ଦେହରୁ କୁର୍ତ୍ତାଟି ନେଇଗଲେ, ତାକୁ କମିଜଟି ମଧ୍ୟ ଦେଇଦିଅ । ଯେ ଯାହା ମାଗିଲା ତାକୁ ତାହା ଦିଅ । ଅରେ ଯାହା ଦେଇଛ, ତାକୁ ଫେରାଇ ନିଅ ନାହିଁ । ଅନ୍ୟମାନଙ୍କଠାରୁ ତୁମେ ଯେଉଁପରି ବ୍ୟବହାର ଆଶା କର, ସେମାନଙ୍କ ପ୍ରତି ସେହିପରି ବ୍ୟବହାର କର ।"

ମାର୍ଟିନ ଏହାକୁ ପଢ଼ିଲାକ୍ଷଣି ତାର ଅସୀମ ଆନନ୍ଦ ହେଲା । ଅତି ଆନନ୍ଦିତ ମନରେ ସେ ଶୋଇବାକୁ ବାହାରିଲା । କିନ୍ତୁ ବହିଟି ବନ୍ଦ କରି ରଖିଦେବାକୁ ତାର ମନ ହେଲା ନାହିଁ । ସେ ଷଷ୍ଠ ଅଧ୍ୟାୟ ଶେଷ କରି ସପ୍ତମ ଅଧ୍ୟାୟ ପଢ଼ିବାକୁ ଲାଗିଲା । ବଧବାର ପୁଅ ରୋମାନଙ୍କର ସେଣ୍ଟୁରିଅନର କଥା, ଯୋହନଙ୍କ ଶିଷ୍ୟମାନଙ୍କ ପ୍ରତି ଉତ୍ତର, ଧନୀ ଫାରୁଶୀଙ୍କର ପ୍ରଭୁଙ୍କୁ ନିଜ ଘରକୁ ଆମନ୍ତ୍ରଣ, ଜଣେ ପାପୀୟସୀ ରମଣୀ-ଦ୍ୱାରା ପ୍ରଭୁଙ୍କର ପାଦରେ ତୈଳ ଲେପନ ଓ ନିଜ ଲୋତକରେ ପାଦଧୋପନ; ତାହାର କାର୍ଯ୍ୟକୁ ପ୍ରଭୁଙ୍କର ସମର୍ଥନ—ଏସବୁ ସେ ପଢ଼ିଗଲା । ଚତୁଃଚତ୍ୱାରିଂଶ ଅଧ୍ୟାୟରେ ସେ ପଢ଼ିଲା—

"ସ୍ତ୍ରୀଲୋକଟି ଆଡ଼କୁ ମୁହଁ ଫେରାଇ ସେ ସାଇମନକୁ କହିଲେ—ତୁମେ ଏହି ସ୍ତ୍ରୀଟିକୁ ଦେଖୁଛ ? ମୁଁ ତୁମ ଘରକୁ ଗଲି; ତୁମେ ମୋର ପାଦ ଧୋଇବାପାଇଁ ପାଣି ଦେଲ ନାହିଁ । ଏହି ସ୍ତ୍ରୀଲୋକଟି ନିଜ ଚକ୍ଷୁର ଲୋତକରେ ମୋର ପାଦ ଧୋଇ ଦେଇ ନିଜ କେଶଗୁଚ୍ଛରେ ପୋଛି ଦେଇଛି । ତୁମେ ମୋତେ ଚୁମ୍ବନ ଦେଇନଥିଲ, କିନ୍ତୁ ଏ ସ୍ତ୍ରୀଲୋକଟି ମୁଁ ଆସିଲାବେଳୁ ମୋର ପାଦକୁ ଚୁମ୍ବନ କରୁଅଛି । ତୁମେ ମୋର ମସ୍ତକରେ ସୁଦ୍ଧା ତୈଳ ଲେପନ କରିନଥିଲ, କିନ୍ତୁ ସେ ମୋର ପାଦରେ ତୈଳ ଲେପନ କରିଅଛି ।"

ଏହି ଅଂଶ ପଢ଼ୁ ପଢ଼ୁ ମାର୍ଟିନ ଚିନ୍ତାକଲା—ସେ ପାଦ ଧୋଇବା ପାଇଁ ପ୍ରଭୁଙ୍କୁ ପାଣି ଦେଲାନାହିଁ, ଚୁମ୍ବନ ଦେଲାନାହିଁ, ମଥାରେ ତୈଳ ଲେପନ କଲାନାହିଁ··· । ସେ ଚଷମା କାଢ଼ି ବହି ଉପରେ ଥୋଇ ଦେଇ

ଭାବିବାକୁ ଲାଗିଲା—ସେ ଫାରୁଣୀ ନିଶ୍ଚୟ ମୋର ଭଲ ହୋଇଥିବ । ମୋର ଭଲ ସେ କେବଳ ନିଜ କଥା ଭାବୁଥିଲା—କିପରି ଭଲ ପିଇବ, କିପରି ସୁଖରେ ରହିବ, ଏହାହିଁ ତାର ଚିନ୍ତା ଥିଲା । ସେ ନିଜର ସୁଖ ଚିନ୍ତା କରୁଥିଲା, କିନ୍ତୁ ତାର ଅତିଥିଙ୍କର ସୁଖସ୍ୱାଚ୍ଛନ୍ଦ୍ୟ କଥା ଆଦୌ ଭାବୁ ନଥିଲା । ପୁଣି ସେ ଅତିଥି ଯିଏ ସେ ନୁହନ୍ତି, ସ୍ୱୟଂ ପ୍ରଭୁ । ଯଦି ପ୍ରଭୁ ମୋ ଘରକୁ ଆସିଥାନ୍ତେ, ମୁଁ କଅଣ ସେହି ଫାରୁଣୀ ପରି ବ୍ୟବହାର ଦେଖାଇଥାଆନ୍ତି ?

ଟେବୁଲ ଉପରେ ମଥା ରଖି ଏହିପରି ଭାବୁ ଭାବୁ ମାର୍ଟିନଙ୍କୁ କେତେବେଳେ ନିଦ ଲାଗିଗଲା ସେ ଜାଣେନା । ମାର୍ଟିନ କିଛି ସମୟ ପରେ ଅନୁଭବ କଲା, ଯେତେ ଯେପରି କେହି ଜଣେ ତା କାନ ପାଖରେ ଡାକୁଛି— 'ମାର୍ଟିନ' । ସେ ଚମକି ପଡ଼ି ନିଦରୁ ଉଠି ବସିଲା । କାହାରିକୁ ଦେଖି ନପାରି କହିଲା, "କିଏ ମୋତେ ଡ଼ାକୁଛ ?" କୌଣସି ଉତ୍ତର ନପାଇ ସେ ଥରେ ଦୁଆରଆଡ଼କୁ ଚାହିଁ ପୁଣି କହିଲା, "କିଏ ଡାକୁଛ ?" ଏବେ ସେ ଶୁଣିବାକୁ ପାଇଲା, "ମାର୍ଟିନ, ମୁଁ କାଲି ତୋ ଘରକୁ ଆସିବି । ରାସ୍ତା ଉପରକୁ ଚାହିଁଥିବୁ ।"

ମାର୍ଟିନ ଠିଆହେଲା ; ଆଖି ମଳି ମଳି ସେ ଆଉ ଥରେ ଦରୁଆଡ଼କୁ ଚାହିଁଲା— କିନ୍ତୁ କାହାରିକୁ ଦେଖି ପାରିଲା ନାହିଁ । ସେ ସ୍ପଷ୍ଟ ଭାବରେ ଶୁଣିଥିଲା । ତାର ସନ୍ଦେହ ହେଲା—ଯାହା ଶୁଣିଲା ତାହା ସ୍ୱପ୍ନ ନା ସତ୍ୟ । ଯାହାହେଉ ସେ ଆଲୁଅ ଲିଭାଇଦେଇ ପୁଣି ଶୋଇବାକୁ ଗଲା ।

ପରଦିନ ସକାଳେ ସୂର୍ଯ୍ୟୋଦୟ ପୂର୍ବରୁ ଉଠି ସେ ଈଶ୍ୱରଙ୍କୁ ପ୍ରାର୍ଥନା କଲା । ତାହାପରେ ଚୁଲି ଲଗାଇ କିଛି କୋବି ଝୋଳ ଓ ଜାଉ ତିଆରି କଲା । ଖାଇବାର ବ୍ୟବସ୍ଥା କରିସାରି ସେ କେଟ୍ଲିରେ ଗୁହା ପାଣି ଦେଇ ଚୁଲି ଉପରେ ରଖିଦେଲା ଓ କାମ କରିବା ଜାଗାକୁ ଚାଲିଗଲା ।

ସେ ଝରକା ପାଖରେ ବସି ନିଜ କାମରେ ଲାଗିଲା । କାମ କରୁକରୁ ସେ ଗଲା ରାତିକଥା ମନେପକାଉଥାଏ । ବେଳେ ବେଳେ ସେ ଭାବୁଥିଲା— ମୁଁ ସ୍ୱପ୍ନ ଦେଖିଥିବି । ପଣି ବେଳେବେଳେ ମନେକରୁଥିଲା,—ନା, ସ୍ୱପ୍ନ ହୋଇ ନପାରେ । ମୁଁ ଏଇ କାନରେ ସ୍ପଷ୍ଟ ଶୁଣିପାରିଛି । ସ୍ୱପ୍ନ ହେବ

କପରି ? ପୂର୍ବେ ଏପରି ସ୍ୱର୍ଗୀୟ ବାଣୀ ଶୁଣାଯାଇଥିବାର ଶାସ୍ତ୍ରରେ ଲେଖାଅଛି । ତେବେ ମୁଁ ଯାହା ଶୁଣିଲି ତାହା କଅଣ ସତ ?"

ସେ କାମ କରୁଥାଏ; କିନ୍ତୁ ବାରମ୍ବାର ରାସ୍ତାକୁ ଚାହୁଁଥାଏ । ତେଣୁ କାମରେ ସେ ପୂରା ମନ ଦେଇପାରୁନଥାଏ । କୌଣସି ଲୋକର ପାଦରେ ଅପରିଚିତ ଜୋତା ଦେଖିଲେ ସେ ଠିଆହୋଇ ତାର ମୁହଁକୁ ଚାହୁଁଥିଲା । ସେ ଭାବିଲା, "ବୃଦ୍ଧାବସ୍ଥା ଆସିବାରୁ ମୋର ମତିଭ୍ରମ ଘଟୁଛି । କିଏ ନାହିଁ କିଏ ଆସୁଛି, ଅଥଚ ମୁଁ ଭାବୁଛି—ପ୍ରଭୁ ଯୀଶୁଖ୍ରୀଷ୍ଟ ମୋତେ ଦେଖାଦେବାକୁ ଆସୁଛନ୍ତି । ହାୟ, ବାର୍ଦ୍ଧକ୍ୟ ହେତୁ ମୋର ମସ୍ତିଷ୍କ ବିକୃତ ହେଲାଣି ।"

କିନ୍ତୁ ମାର୍ଟିନର ମନ ସ୍ଥିର ହେଲା ନାହିଁ । ସେ ଗୋଟିଏ ଜୋତାର ଛିଣ୍ଡା ଦୁଇଅଂଶ ସିଲେଇ କରିସାରି ପୁଣି ରାସ୍ତା ଆଡ଼କୁ ଚାହିଁଲା । ଦେଖିଲା ରାସ୍ତାର ବରଫ ସଫା କରିବା ଲୋକ ଷ୍ଟେଫାନକ କୋଦାଳକୁ ରଖିଦେଇ କାନ୍ଥକୁ ଆଉଜି ଛିଡ଼ାହୋଇଛି । ହୁଏତ ସେ ବିଶ୍ରାମ ନେଉଥିଲା, କିମ୍ବା ଦେହକୁ ଉଷୁମ କରିବାପାଇଁ ଚେଷ୍ଟା କରୁଥିଲା । ସହଜେ ବୃଦ୍ଧ ଲୋକ, ଦେହ ଦୁର୍ବଳ—ବରଫ ସଫା କରିବା ମଧ୍ୟ ତା' ପକ୍ଷରେ କଷ୍ଟକର ହେଉଥିବ । ମାର୍ଟିନ ଭାବିଲା, ଷ୍ଟେଫାନକକୁ ଥଣ୍ଡା ହେଉଥିବ । ଚାହା ଚୁଲି ଉପରେ ବସିଛି । ତାକୁ ଡାକି ଟିକିଏ ଚାହା ପିଇବାକୁ ଦେଲେ ଭଲ ହୁଅନ୍ତା ।"

ସେ କାମ ବନ୍ଦକରି ଚୁଲି ଉପରୁ କେଟ୍‌ଲି ଆଣିଲା ଓ ଚାହା ତିଆରି କରି ଟେବୁଲ ଉପରେ ରଖିଲା । ତାହାପରେ ସେ ଝରକାବାଟେ ଠାରି ଷ୍ଟେଫାନକକୁ ଆସିବା ପାଇଁ ଡାକିଲା । ଷ୍ଟେଫାନକ ଦ୍ୱାର ମୁହଁକୁ ଆସିବାରୁ ମାର୍ଟିନ କବାଟ ଖୋଲି ତାକୁ ଘର ଭିତରକୁ ଆଣି କହିଲା, "ଭାଇ, ତୁମକୁ ଭାରି ଥଣ୍ଡା ହେଉଥିବ । ଘର ଭିତରେ ବସି ଦେହକୁ ଟିକିଏ ଉଷୁମ କର ।"

ଷ୍ଟେଫାନ କହିଲା, "ଈଶ୍ୱର ତୁମକୁ ଆଶୀର୍ବାଦ କରନ୍ତୁ । ଶୀତରେ ମୋର ଦେହ କମ୍ପିଯାଉଛି ।" ସେ ଦେହରୁ ବରଫ ଝାଡ଼ି ପାଦ ପୋଛୁ ପୋଛୁ ଟଳଟଳ ହୋଇ ପଡ଼ିଯାଉଥିଲା । ମାର୍ଟିନ ତାକୁ ଧରି ପକାଇ କହିଲା, "ପାଦ ପୋଛିବା ଦରକାର ନାହିଁ । ପ୍ରତିଦିନ ମୁଁ ଘରର ଓଳାଇ

ସଫା କରିଥାଏ । ତେଣୁ ପାଦରେ କିଛି ମଇଳା ଲାଗିଥିଲେ ଚିନ୍ତା ନାହିଁ । ଆସ ଭାଇ, ଟିକିଏ ଚାହା ଖାଇଦଅ ।”

ମାର୍ଟିନ ଦୁଇ ଗିଲାସ ଚାହା ଆଣି ଗୋଟିଏ ଗିଲାସ ଷ୍ଟେପାନିକ ହାତକୁ ବଢ଼ାଇଦେଲା ଓ ଅନ୍ୟଟି ନିଜେ ପିଇଲା । ଷ୍ଟେପାନିକ ତା ଚାହା ପିଇସାରି ଗ୍ଲାସଟିକୁ ଓଲଟାଇ ରଖିଦେଲା ଓ ମାର୍ଟିନକୁ ଧନ୍ୟବାଦ ଦେଲା । କିନ୍ତୁ ମାର୍ଟିନ ଭାବିଲା, ଷ୍ଟେପାନିକର ମନବୋଧ ହୋଇନାହିଁ—ଆଉ ଗିଲାସେ ଚାହା ତାର ଦରକାର । ସେ ଆଉ ଦୁଇଗିଲାସ ଚାହା ତିଆରି କରି ପୁଣି ଗୋଟିଏ ଗିଲାସ ଷ୍ଟେପାନିକ ହାତକୁ ବଢ଼ାଇଦେଲା ଓ ଅନ୍ୟ ଗିଲାସର ଚାହା ନିଜେ ପିଇବାକୁ ଲାଗିଲା । ଚାହା ଖାଇବା ସଙ୍ଗେ ସଙ୍ଗେ ମାର୍ଟିନ ବାରମ୍ବାର ରାସ୍ତା ଉପରକୁ ଚାହୁଁଥାଏ ।

ଷ୍ଟେପାନିକ ପଚାରିଲା, “ବାହାରକୁ ଚାହୁଁଛ କାହିଁକି ? ଆଜି କଅଣ କେହି ଆସିବାର କଥା ଅଛି ?”

ମାର୍ଟିନ ଉତ୍ତର କଲା, “କିଏ ଆସିବାର କଥା ଅଛି ବୋଲି ପଚାରୁଛ ! କହିବାକୁ ଲାଜ ମାଡ଼ୁଛି । କାଲି ରାତିରେ ମୁଁ ଏକ ଅଦ୍ଭୁତ ବାଣୀ ଶୁଣିଲି; ସେକଥା ମୁଁ ଭୁଲି ପାରୁନାହିଁ । ପ୍ରକୃତରେ ମୁଁ ତା ଶୁଣିଲି, କି ସେ ଗୋଟାଏ ସ୍ୱପ୍ନ, କି ମିଥ୍ୟା କଳ୍ପନା କହିପାରିବି ନାହିଁ । ଭାଇ, କଥା ହେଉଛି, କାଲି ରାତିରେ ବସି ମୁଁ ବାଇବେଲ ପଢ଼ୁଥିଲି । ପ୍ରଭୁ ଯୀଶୁଖ୍ରୀଷ୍ଟ କିପରି ପୃଥିବୀରେ ଥିଲେ ଓ କିପରି କଷ୍ଟ ସହ୍ୟ କରିଥିଲେ ତାହା ତୁମେ ଅବଶ୍ୟ ଶୁଣିଥିବ ।”

ଷ୍ଟେପାନିକ କହିଲା, “ହଁ, ପ୍ରଭୁଙ୍କ ବିଷୟ ମୁଁ ଶୁଣିଛି; କିନ୍ତୁ ମୁଁ ମୂର୍ଖ ଲୋକ । ବାଇବେଲ ପଢ଼ିନାହିଁ ।”

ମାର୍ଟିନ କହିବାକୁ ଲାଗିଲା, “ହଁ, ମୁଁ ବାଇବେଲରୁ ପ୍ରଭୁଙ୍କ ବିଷୟ ପଢ଼ୁଥିଲି । ସେ ଜଣେ ଫାରୁଶି ଘରକୁ ଯାଇଥିଲେ । ସେ ପ୍ରଭୁଙ୍କୁ ଆଦର ଗୌରବ କଲାନାହିଁ । ଏହି ଅଂଶ ପଢ଼ୁ ପଢ଼ୁ ମୁଁ ଭାବିଲି—ସେ ଲୋକଟା ପ୍ରଭୁ ଯୀଶୁଙ୍କର ଉପଯୁକ୍ତ ସମ୍ମାନ କଲାନାହିଁ; କିନ୍ତୁ ଯଦି ପ୍ରଭୁ ଯୀଶୁ ମୋ କୁଡ଼ିଆରେ ପାଦ ପକାନ୍ତେ ମୁଁ ତାଙ୍କ ଅଭ୍ୟର୍ଥନା ପାଇଁ ସବୁ କରନ୍ତି । ସେ ଫାରୁଶି କଅଣ ନକଲା ? ଏହିପରି ଭାବୁ ଭାବୁ ମୁଁ ଶୋଇପଡ଼ିଲି । ଏହି ସମୟରେ କିଏ ଜଣେ ମୋ କାନ ପାଖରେ କହିଲା—ମାର୍ଟିନ, ମୁଁ କାଲି

ତୋ ଘରକୁ ଆସିବ—ମୋ ପାଇଁ ଅପେକ୍ଷା କରଥିବୁ । ଏହାପରେ ଦୁଇଥର ଶୁଣାଗଲା । ଭାଇ, ସତ କହୁଛୁ, ସେଇ କଥାଟା ମୋ ମନ ଭିତରେ ଲାଗି ରହିଛି । ଲୋକର କଥା, କେହି ଏପରି କଥାକୁ ବିଶ୍ୱାସ କରିବେ ନାହିଁ । ମୁଁ ସେଇ ପ୍ରଭୁଙ୍କ ଆସିବାକୁ ଚାହିଁ ରହିଛି ।''

ଷ୍ଟେପାନିଚ ନୀରବରେ ମୁଣ୍ଡ ହଲାଇ ଚାହାତକ ପିଇଦେଲା ଓ ଗିଲାସଟି ରଖିଦେଲା । ମାଝ ମାର୍ଟିନ ପୁଣି ଗିଲାସରେ ଚାହା ଢାଳି କହିଲା, "ଭାଇ, ଆଉ ଗିଲାସେ ନିଅ । ହଁ, ମୁଁ ଭାବୁଥିଲି, ପ୍ରଭୁ ଯୀଶୁଖ୍ରୀଷ୍ଟ ପୃଥିବୀରେ ଥିଲା-ବେଳେ କାହାକୁ ଘୃଣା କରୁନଥିଲେ; ସାଧାରଣ ଲୋକଙ୍କ ସାଥିରେ ଚଳୁ-ଥିଲେ । ଆମରି ଭଳି ପାପୀ ଓ ମୂଲିଆ ଶ୍ରେଣୀର ଲୋକଙ୍କ ଭିତରୁ ତାଙ୍କର ଶିଷ୍ୟମାନଙ୍କୁ ନେଇଥିଲେ । ସେ କହୁଥିଲେ, ଯିଏ ନିଜକୁ ବଡ଼ କରିବାକୁ ବସିବ ସେ ତଳକୁ ଯିବ; ଯେ ନିଜକୁ ସାନ କରିବାକୁ ଯିବ ସେ ଉପରକୁ ଉଠିବ । ତୁମେ ମୋତେ 'ପ୍ରଭୁ' ବୋଲି କହୁଛ, କିନ୍ତୁ ମୁଁ ତୁମର ପାଦ ଧୋଇଦେବି । ଯିଏ ସମସ୍ତଙ୍କ ଆଗରେ ରହିବାକୁ ଚାହେଁ, ସେ ସମସ୍ତଙ୍କର ଚାକର ହେବା ଦରକାର; କାରଣ ଦରିଦ୍ର, ବିନମ୍ରୀ, ଦୟାଳୁ ଓ ଶାନ୍ତ ପ୍ରକୃତିର ଲୋକେହିଁ ଆଶୀର୍ବାଦର ପାତ୍ର ।''

ଷ୍ଟେପାନିଚ ଚାହା ପିଇବା ଭୁଲିଯାଇଥିଲା । ମାର୍ଟିନର କଥା ଶୁଣୁ ଶୁଣୁ ତା ଆଖିରୁ ଲୁହ ଧାର ବହିଗଲା । ମାର୍ଟିନ ତାହା ଲକ୍ଷ୍ୟ କରି କହିଲା, ''ଭାଇ, ଚାହାତକ ପିଇଦିଅ ।'' କିନ୍ତୁ ଷ୍ଟେପାନିଚ ତାକୁ ଧନ୍ୟବାଦ ଦେଇ ଗିଲାସଟି ରଖିଦେଲା ଓ ଧୀରେ ଘରୁ ବାହାରିଗଲା । ଗଲାବେଳେ ସେ କହିଲା, ''ମାର୍ଟିନ ଭାଇ, ତୁମେ ଆଜି ଖାଲି ମୋ ପେଟକୁ ଆହାର ଦେଇ ନାହଁ; ତୁମେ ମୋର ଦେହ ଓ ଆତ୍ମା ଉଭୟକୁ ଯଥେଷ୍ଟ ଖାଦ୍ୟ ଯୋଗାଇ ଦେଇଛ ।''

ଷ୍ଟେପାନିଚ ଯିବା ପରେ ମାର୍ଟିନ ଅବଶିଷ୍ଟ ଚାହା ଢାଳି ନିଜେ ପିଇଲା । ଚାହା ଗିଲାସ ପ୍ରଭୃତି ରଖି ଦେଇ ସେ ପୁଣି କାମରେ ବସିଲା । ଜୋତା ସିଲାଇ କରିବା ସଙ୍ଗେ ସେ ବାରମ୍ବାର ବାହାରକୁ ଚାହୁଁଥାଏ ଓ ଯୀଶୁଖ୍ରୀଷ୍ଟଙ୍କ କଥା ଭାବୁଥାଏ । ତା ମନରେ ଯୀଶୁଙ୍କର ଉପଦେଶାବଳୀ ଜାଗିଉଠୁଥାଏ ।

ମାର୍ଟିନ ଦେଖିଲା, ରାସ୍ତା ଉପରେ ଦୁଇଜଣ ସୈନିକ ଗଲେ । ଦୁହିଁଙ୍କ ଭିତରୁ ଜଣେ ମାର୍ଟିନର ହାତତିଆରି ଜୋତା ପିନ୍ଧିଥିଲା । ସେ ଦୁହିଁଙ୍କ ପରେ ଜଣେ ପଡ଼ୋଶୀଘରର ଲୋକ ଓ ଜଣେ ଲୁଟିବାଲା ଚାଲିଗଲେ । କିଛି ସମୟ ପରେ ଜଣେ କୃଷକ ଘରର ସ୍ତ୍ରୀ ସେହି ବାଟେ ଗଲା । ସେ ଝରକା ପାଖ ରାସ୍ତା ପାରି ହୋଇ ପୁଣି ଫେରି ଆସି କାନ୍ଥକୁ ଆଉଜି ଛିଡ଼ା ହେଲା । ମାର୍ଟିନ ତାକୁ ଦେଖି ଚିହ୍ନି ପାରିଲା ନାହିଁ । ସେ ଲକ୍ଷ୍ୟ କଲା ଯେ ସ୍ତ୍ରୀ ଲୋକଟିର ପୋଷାକ ଛିଣ୍ଡା, ତାର କୋଳରେ ଗୋଟିଏ ଶିଶୁ । ସେ ପବନ ଆଡ଼କୁ ପିଠିକରି ନିଜର ଛିଣ୍ଡା ପୋଷାକରେ ଶିଶୁଟିକୁ ଶୀତ ପବନରୁ ରକ୍ଷା କରିବାକୁ ଚେଷ୍ଟା କରୁଥିଲା । ଝରକାବାଟେ ଶିଶୁର କାନ୍ଦ ଶୁଣାଗଲା । ମାର୍ଟିନ ଜାଣିପାରିଲା ଯେ ଶିଶୁଟି କ୍ଷୋଭରେ କାନ୍ଦୁଛି; ମାତ୍ର ତାର କ୍ଷୋଭ ଶାନ୍ତ କରିବାପାଇଁ ମାଆର ଶକ୍ତି ନାହିଁ ।

ମାର୍ଟିନ କାମରୁ ଉଠି କବାଟ ଫିଟାଇଲା ଓ ସେ ସ୍ତ୍ରୀଲୋକର ପାଖକୁ ଯାଇ କହିଲା, "ହେଇଅ, ଛୁଆଟିକୁ କୋଳରେ ଧରି ଏପରି ଥଣ୍ଡାରେ ଛିଡ଼ା ହୋଇଛୁ କାହିଁକି ? ଆ ମାଆ, ଘର ଭିତରକୁ ଆ । ଘର ଭିତରେ କିଛିଏ ଉଷୁମ ଲାଗିବ ।"

ସ୍ତ୍ରୀଲୋକଟି ବାଲପଢ଼ା ଆଗରେ ଜଣେ ବୃଦ୍ଧ ଲୋକକୁ ଦେଖି ପଚାରିଲା । ବୃଦ୍ଧର ଆଖିରେ ଚଷମା । ବୃଦ୍ଧର କଥା ଶୁଣି ସେ କିଛି ନକହି ତାହା ସହିତ ଘର ଭିତରକୁ ଆସିଲା । ମାର୍ଟିନ କହିଲା, "ଯାଆ, ଚୁଲି ପାଖରେ ବସ । ନିଜ ଦେହକୁ କିଛିଏ ଉଷୁମକରି ପିଲାକୁ ଦୁଧ ଖୁଆଇଦେ ।"

ସ୍ତ୍ରୀଲୋକଟି ସଙ୍କୋଚ ତ୍ୟାଗ କରି କହିଲା, "ମଉସା, ଦୁଧ ଦେବ କାହୁଁ ? ମୁଁ ନିଜେ କାଲି ରାତିରୁ କିଛି ଖାଇ ନାହିଁ ।" ଏହା କହି ସେ ପିଲାର ମୁହଁକୁ ନିଜର ସ୍ତନରେ ଲଗାଇ ଦେଲା ।

ମାର୍ଟିନ ଦେଖିଲା, ସ୍ତ୍ରୀଲୋକଟିର କଥା ମିଛ ନୁହେଁ । ସେ ଗୋଟିଏ ପାତ୍ରରେ କିଛି ରୁଟି ଓ ଅନ୍ୟ ପାତ୍ରରେ କିଛି ଝୋଳ ଆଣି ଟେବୁଲ ଉପରେ ରଖି ଦେଇ କହିଲା, "ହେଇଅ, ତୁ ବସି ଏତିକି ଖାଇଦେ । ମୋ ହାତକୁ ପିଲାକୁ ଦେ । ମୁଁ ତା କଥା ବୁଝୁଛି । ଖାଇସାରିଲେ ପିଲାକୁ ପୁଣି ନେବୁ ।"

ମାର୍ଟିନ ତାକୁ କିଛି ଜାଉ ମଧ୍ୟ ଦେବାକୁ ଭାବିଥିଲା; କିନ୍ତୁ ଜାଉ ସିଝି ସାରି ନଥିଲା ।

ମାର୍ଟିନ ସ୍ତ୍ରୀଲୋକଟିର ହାତରୁ ପିଲାଟିକୁ ନେଇ ଆପଣା ବିଛଣାରେ ଶୁଆଇଦେଲା ଓ ତା ପାଖରେ ବସି ଖେଳାଇଲା ।

ସ୍ତ୍ରୀ ଲୋକଟି ଖାଉ ଖାଉ ନିଜର ଦୁଃଖ କାହାଣୀ କହିଗଲା—ମୋର ସ୍ୱାମୀ ଜଣେ ସୈନିକ । ଆଠମାସ ତଳେ ତାଙ୍କୁ କେଉଁ ଏକ ଦୂର ସ୍ଥାନକୁ ପଠାଯାଇଥିଲା । ସେହି ଦିନୁ ମୁଁ ତାଙ୍କର କିଛି ଖବର ପାଇନାହିଁ । ମୁଁ ବହୁତ ଚେଷ୍ଟା କରି ଖଣ୍ଡେ କାମ ମଧ୍ୟ ପାଉନାହିଁ—ତେଣୁ ଭୋକ ଉପାସରେ ରହୁଛି । ଏଥିମଧ୍ୟରେ ମୋର ଯାହା କିଛି ଥିଲା ସବୁ ପେଟ ପାଇଁ ବିକିସାରିଛି ।

ମାର୍ଟିନ ପଚାରିଲା, "ହିଁଅ, ତୋର କଅଣ କିଛି ଗରମ ଲୁଗା ନାହିଁ ?"

"ଗରମ ଲୁଗା କାହୁଁ ଆସିବ ? ହଁ, ଖଣ୍ଡିଏ ଶସ୍ତା ଗରମ ଚାଦର ଥିଲା । କାଲି ତାକୁ ଛଅଅଣା ପଇସାରେ ବିକି ରୁଟି ଅଣିଥିଲି ।"

ଖାଇ ସାରିବା ପରେ ସ୍ତ୍ରୀ ଲୋକଟି ଆସି ପିଲାକୁ ଧରିଲା । ମାର୍ଟିନ ଛଠିମାଇ ଘରର ଗୃହଅଡ଼କୁ ଯାଇ କାନ୍ଥରେ ଝୁଲୁଥିବା ଗୋଟିଏ ଗରମ କୁର୍ତ୍ତା ଅଣିଲା । ସେ କହିଲା, "ହିଁଅ, ଏ କୁର୍ତ୍ତାଟି ନେ । ପୁରୁଣା, ଠାଏ ଠାଏ ଚିରି ଯାଇଛି । ଯାହାହେଉ, ଏଥିରେ ପିଲାକୁ ଘୋଡାଇ ପାରିବୁ ।"

ସ୍ତ୍ରୀ ଲୋକଟି ମାର୍ଟିନ ହାତରୁ କୁର୍ତ୍ତାଟି ନେଇ ତାର ମୁହଁକୁ ଚାହିଁ ହଠାତ୍ କାନ୍ଦିଉଠିଲା । ମାର୍ଟିନ ସେଠାରୁ ଚାଲିଯାଇ ଖଟତଳେ ଆଉଁଶାଇ ପଡ଼ିଲା । ଗୋଟିଏ ଛୋଟ ବାକ୍ସ ଫିଟାଇ ସେଥିରେ ଥିବା ପଇସାତକ ଘେନି ଆସିଲା । ମାର୍ଟିନ ଟେବୁଲ ପାଖେ ବସିବାରୁ ସ୍ତ୍ରୀ ଲୋକଟି କହିଲା, "ମଉସା, ଈଶ୍ୱର ତୁମର ମଙ୍ଗଳ କରିବେ । ପ୍ରଭୁ ଯୀଶୁ ମୋତେ ତୁମ ଝରକା ପାଖକୁ ପଠାଇଲେ; ନ ହେଲେ ମରିଯାଇଥାନ୍ତି । ନିଶ୍ଚୟ ପ୍ରଭୁ ଯୀଶୁ ତୁମକୁ ମଧ୍ୟ ସେତେବେଳେ ଝରକାବାଟେ ଚାହିଁବାକୁ ପଠାଇଥିଲେ । ତାଙ୍କରି ଇଚ୍ଛାରେ ତୁମେ ମୋର ଅବସ୍ଥା ଦେଖି ଏତେ ଦୟା କଲ ସିନା !" ମାର୍ଟିନ ଟିକିଏ ହସିଦେଇ କହିଲା, "ହିଁଅ, ତୁ ଯାହା କହିଲୁ ତାହା ସତ । ସବୁ

ପ୍ରଭୁ ଯୀଶୁ କରୁଅଛନ୍ତି । କିନ୍ତୁ ମୁଁ ଯେ ଦୈବାତ୍ ଝରକାବାଟେ ଗୁହଁ ତୋତେ ଦେଖିଲି, ତାହାନୁହେଁ । ମୁଁ ଜଣକର ଅପେକ୍ଷାରେ ବାରମ୍ବାର ରାସ୍ତା ଉପରକୁ ଗୁହୁଁଥିଲି ।’’

ତା'ହାପରେ ମାର୍ଟିନ ପୂର୍ବ ରାତିର ସମସ୍ତ ଘଟନା ବର୍ଣ୍ଣନା କରିଗଲା । ସବୁ ଶୁଣିସାରି ସ୍ତ୍ରୀଲୋକଟି କହିଲା, ‘‘କିଏ ଜାଣେ—ଜଗତରେ ସବୁ ସମ୍ଭବ । ପ୍ରଭୁ ଯୀଶୁଖ୍ରୀଷ୍ଟ ତୁମ ଘରକୁ ଆସିବା ଅସମ୍ଭବ ହେବ କି ?’’

ପିଲାଟିକୁ ଓ ନିଜ ଦେହକୁ କୁର୍ତ୍ତାରେ ଢ଼ାଙ୍କି ସ୍ତ୍ରୀ ଲୋକଟି ମାର୍ଟିନକୁ ଧନ୍ୟବାଦ ଦେଲି ଓ ପ୍ରଣାମ ଜଣାଇ ଯିବାକୁ ବାହାରିଲା । ମାର୍ଟିନ ପକେଟରୁ ପୁଣି ଛଅଅଣା ପଇସା ବାହାରକରି କହିଲି, ‘‘ନିଅ, ଏତିକି ପଇସା ନେ । କାଲି ଯେଉଁ ପୁରୁଣା ଗୁଦରଟିକୁ ବନ୍ଧକ ଥିଲୁ ସେଇଟି ଫେରାଇଆଣିବୁ ।’’

ସ୍ତ୍ରୀଲୋକଟି ପଇସାତକ ନେଇ ପୁଣି ଧନ୍ୟବାଦ ଦେଲା । ଉଭୟେ ପରସ୍ପରକୁ ଶୁଭେଚ୍ଛା ଜଣାଇବା ପରେ ସ୍ତ୍ରୀଲୋକଟି ପିଲାକୁ ନେଇ ବାହାରିଗଲା । ମାର୍ଟିନ ଅବଶିଷ୍ଟ କୋବି ଝୋଳ ଓ କିଛି ରୁଟି ଆଣି ଖାଇଲା । ଟେବୁଲ ସଫା କରି ସେ ପୁଣି କାମ କରିବାକୁ ବସିଲା । କିନ୍ତୁ କାମ ସଙ୍ଗେ ସଙ୍ଗେ ସେ ପୂର୍ବଭଳି ବାରମ୍ବାର ଝରକାବାଟେ ରାସ୍ତା ଉପରକୁ ଚାହୁଁଥାଏ । କେତେ ଲୋକ ରାସ୍ତାରେ ଯିବାର ସେ ଦେଖିଲା । କିଛି ସମୟ ପରେ ଜଣେ ଆତବିକାଳି ବୁଢ଼ୀ ଆସି ତା ଝରକା ପାଖେ ଛିଡ଼ା ହେଲା ଓ ମୁଣ୍ଡରୁ ବୋଝଟି ଓହ୍ଲାଇ ତଳେ ରଖିଲା । ଅଳ୍ପ କେତୋଟି ଆତ ସେଥିରେ ଥିଲା; ଆଉ ସବୁ ବିକ୍ରି ହୋଇଯାଇଥିଲା । ବୁଢ଼ୀ ଟିକିଏ ଦେହ ସଳଖୁଛି ଏହି ସମୟରେ ଗୋଟାଏ ପିଲା ଦଉଡ଼ି ଆସି ଟୋକେଇରୁ ଗୋଟାଏ ଆତ ନେଇ ପଳାଇବାକୁ ବସିଲା । ବୁଢ଼ୀ ତାହା ଦେଖିପାରି ହଠାତ୍ ବୁଲି ପଡ଼ି ତାର ହାତକୁ ଧରିପକାଇଲା । ଦୁହେଁ ଟଣ ଓଟରା ହେଲେ । ବୁଢ଼ୀ ପିଲା ମୁଣ୍ଡର ବାଳକୁ ଧରି ଟାଣିବାରୁ ସେ ଚିତ୍କାର କରିବାକୁ ଲାଗିଲା । ବୁଢ଼ୀ ତାକୁ ଗାଳି ଦେଇ ପାଟିକରୁଥାଏ । ଗୋଳମାଳ ଶୁଣି ମାର୍ଟିନ ତରତର ହୋଇ ଘରୁ ବାହାରିଆସିଲା ଓ ବୁଢ଼ୀ ହାତରୁ ପିଲାକୁ ନେଇ ଆସି ଦୁହିଁଙ୍କୁ ଅଲଗା କରିଦେଲା ଓ ବୁଢ଼ୀକୁ କହିଲା, ‘‘ମାଉସି, ପିଲାଟିକୁ ଛାଡ଼ିଦିଅ । ପ୍ରଭୁ ଯୀଶୁଙ୍କ ନାମରେ ତୁମକୁ ଅନୁରୋଧ କରୁଛି, ତାକୁ କ୍ଷମା କର ।’’

ବୁଢ଼ୀର ରାଗ ଶାନ୍ତ ହୋଇ ନଥାଏ । ସେ କହିଲା, "ସେ ସଇତାନକୁ ଛାଡ଼ି ଦେବି ? ତାକୁ ଏମିତି ଶିକ୍ଷା ଦେବି ଯେ ଜୀବନରେ ଭୁଲିବ ନାହିଁ । ତାକୁ ମୁଁ ଥାନାକୁ ନେଇଯିବି ।"

ମାର୍ଟିନ ପୁଣି ବୁଢ଼ୀକୁ ଅନୁରୋଧ କରି କହିଲା "ସେ ଆଉ କେବେ ଏପରି କାମ କରିବ ନାହିଁ—ତାକୁ କ୍ଷମା ଦିଅ । ସେ ଚାଲିଯାଉ, ପ୍ରଭୁ ଯୀଶୁଙ୍କ ନାମରେ ମୁଁ ଏତିକି ଅନୁରୋଧ କରୁଛି ।"

ବୁଢ଼ୀ ପିଲାକୁ ଛାଡ଼ି ଦେଲା । ତତ୍‌କ୍ଷଣାତ୍ ସେ ପଳାଇବାକୁ ବସିଲା । କିନ୍ତୁ ମାର୍ଟିନ ତାକୁ ବନ୍ଦ କରି କହିଲା, "ଯିବା ପୂର୍ବରୁ ବୁଢ଼ୀ-ମାଆଠାରୁ କ୍ଷମା ମାଗେ । ମୁଁ ଦେଖିଛି, ତୁ ଗୋଟାଏ ଅତ ନେଇଛୁ । ସେପରି କାମ ଆଉ କେବେ କରିବୁ ନାହିଁ ।"

ପିଲାଟି କାନ୍ଦି କାନ୍ଦି ବୁଢ଼ୀଠାରୁ କ୍ଷମା ଭିକ୍ଷା କଲା । "ବେଶ୍, ଠିକ୍ ହେଲା—ଏବେ ଆଉ ଗୋଟିଏ ଆତ ନେ ।" ଏହା କହି ମାର୍ଟିନ ବୁଢ଼ୀର ଟୋକେଇରୁ ଆଉ ଗୋଟିଏ ଆତ ନେଇ ପିଲାକୁ ଦେଲା ଓ ବୁଢ଼ୀକୁ କହିଲା, "ମାଉସୀ, ଏ ଆତଟିର ପଇସା ମୁଁ ଦେବି ।"

ବୁଢ଼ୀ କହିଲା, "ତୁମେ ସବୁ ଏମିତି ଏ ପିଲାଗୁଡ଼ାଙ୍କୁ ଖରାପ କରିଦେବ । ତାକୁ କିଛି ପାହାର ଦେଇଥିଲେ ସିନା ସେ ଦିନାକେତେ ମନେ ରଖିଥାନ୍ତା !"

ମାର୍ଟିନ କହିଲା, "ମାଉସୀ, ତୁମେ ଯାହା କହିଲ ସେ ହେଉଛି ଆମ ମଣିଷଙ୍କ ବିଚାର । କିନ୍ତୁ ଈଶ୍ୱରଙ୍କ ବିଚାର ସେପରି ନୁହେଁ । ଗୋଟିଏ ଆତ ଚୋରି ପାଇଁ ତାକୁ ଯଦି ପାହାର ଦିଆଯାଏ, ତେବେ ଆମର ଶତଶତ ପାପ ପାଇଁ ଆମକୁ କି ଦଣ୍ଡ ଦେବା ଉଚିତ ହେବ ?"

ବୁଢ଼ୀର ତୁଣ୍ଡରୁ କଥା ବାହାରିଲା ନାହିଁ । ମାର୍ଟିନ ବାଇବେଲର ଗୋଟିଏ ଗଳ୍ପ କହିବାକୁ ଲାଗିଲା ।

"ଜଣେ ଲୋକ ତାର ମୁନିବଙ୍କଠାରୁ ବହୁତ ଟଙ୍କା କରଜ କରିଥିଲା । ସେ ଦୁର୍ଦ୍ଦଶାରେ ପଡ଼ିଥିବାର କହି ମୁନିବଙ୍କଠାରୁ ସମସ୍ତ କରଜ ଛାଡ଼ ପାଇଲା । ସେହି ଲୋକଟି ଅନ୍ୟ ଜଣକୁ ସାମାନ୍ୟ କିଛି କରଜ ଦେଇ-

ଥିଲା । ନଜେ ଋଣରୁ ମୁକ୍ତ ହେଲାକ୍ଷଣି ତା'ର ଖାତକଠାରୁ ସେ କଡ଼ା-ଗଣ୍ଡା ପର୍ଯ୍ୟନ୍ତ ଆଦାୟ କରିବାକୁ ତା ତଣ୍ଟି ଧରିଲା ।''

ବୁଢ଼ୀ ଗଳ୍ପଟିକୁ ମନ ଦେଇ ଶୁଣିଲା; ପିଲାଟି ମଧ୍ୟ ଶୁଣିଲା । ଦୁହେଁ-ଯାକ ଗଳ୍ପଟିର ଉଦ୍ଦେଶ୍ୟ ବୁଝି ପାରିଲେ । ମାର୍ଟିନ ବୁଝାଇ ଦେଲା—ଈଶ୍ୱରଙ୍କର ଆଦେଶ ହେଉଛି 'ଅନ୍ୟକୁ କ୍ଷମା କର; ତାହା ନକଲେ ତୁମେ କ୍ଷମା ପାଇବାର ଅଧିକାରୀ ହୋଇପାରିବ ନାହିଁ । ସମସ୍ତଙ୍କୁ କ୍ଷମାକର, ବିଶେଷତଃ ଅଳ୍ପବୟସ୍କମାନେ କ୍ଷମା ପାଇବାର ଯୋଗ୍ୟ ।''

ବୁଢ଼ୀ ମୁଣ୍ଡ ହଲାଇ କହିଲା, ''ହଁ, ତୁମେ ଯାହା କହିଲ ଖୁବ୍ ସତ; କିନ୍ତୁ ଆଜିକାଲି ପିଲାଗୁଡ଼ାକ ଖରାପ ହୋଇଯାଉଛନ୍ତି ।''

ମାର୍ଟିନ କହିଲା, ''ତାହାହେଲେ ଆମେ ସେମାନଙ୍କୁ ଭଲ ବାଟ ଦେଖାଇବା ଉଚିତ ।''

ବୁଢ଼ୀ ମାର୍ଟିନକୁ ସମର୍ଥନ କରି କହିଲା, ''ମୁଁ ତ ସେଇ କଥା କହୁଛି ! ମୋର ସାତଟି ପୁଅଝିଅ ଥିଲେ; ଏବେ ଗୋଟିଏ ଝିଅ ଛଡ଼ା ଆଉ କେହି ନାହାନ୍ତି । ଝିଅଟିର କେତୋଟି ପିଲାଝିଲା ହେଲେଣି । ମୁଁ ଏବେ ମୋର ସେଇ ଝିଅ ପାଖରେ ରହୁଛି । ମୋର ଆଉ ବଳବଅସ ନାହିଁ; ତଥାପି ସେଇ ନାତି ନାତୁଣୀଙ୍କ ପାଇଁ ମୁଁ କାମ କରୁଛି । ଘରକୁ ଫେରିଲା କ୍ଷଣି ସେମାନେ ମୋପାଖକୁ ଦଉଡ଼ି ଆସିବେ; ଆଇ ଆସିଲାଣି, ଆଇ ଆସିଲାଣି ବୋଲି ମୋ ଗୋଡ଼ପାଖେ ବେଢ଼ିଯିବେ ।''

ଆଉ ମୁହଁରିଥିବା ପିଲାଟିକୁ ଦେଖାଇ ବୁଢ଼ୀ କହିଲା, ''ସତ୍ୟ, ଏ ବି ପିଲା; ପିଲାକଥା କାମଟାଏ କରିପକାଇଛି ।'' ଏହା କହି ବୁଢ଼ୀ ଅଖାଟିକୁ କାନ୍ଧରେ ପକାଇବାକୁ ବସିଲା । ଏହି ସମୟରେ ପିଲାଟି ଆସି କହିଲା, ''ବୁଢ଼ୀମାଆ, ତୁ ଯେଉଁଆଡ଼େ ଯାଉଛୁ ମୁଁ ବି ସେଇଆଡ଼େ ଯିବି । ମୁଁ ତୋ ଅଖାଟି ସେଯାଏ ନେଇଯିବି ।''

ବୁଢ଼ୀ ଅଖାଟିକୁ ପିଲାର ପିଠି ଉପରେ ରଖିବାରେ ସାହାଯ୍ୟ କଲା; ନଜେ ଟୋକେଇଟି ମୁଣ୍ଡରେ ରଖିଲା । ଦୁହେଁ ଚାଲିବାକୁ ଲାଗିଲେ । ଅପଲଟିର ଦାମ ନେବା କଥା ବୁଢ଼ୀ ଏକବାରେ ଭୁଲିଯାଇଥିଲା । ବୁଢ଼ୀ ଓ ପିଲା ଅଦୃଶ୍ୟ ହୋଇଗଲେ । ମାର୍ଟିନ ଘରଭିତରକୁ ଫେରିଆସିଲା ।

ମାର୍ଟିନ୍ ପୁଣି କାମ କରିବାକୁ ବସିଲା; କିନ୍ତୁ ବେଶି ବେଳ କାମ କରିପାରିଲା ନାହିଁ । ବେଳ ବୁଡ଼ିଯାଇଥିଲା । ଜଣେ ଲୋକ ରାସ୍ତା ପାଖ ଖୁମ୍ବର ଆଲୁଅ ଜାଳି ଜାଳି ଯାଉଥିଲା । ମାର୍ଟିନ ବି ଆଲୁଅ ଜାଳି କାମରେ ଲାଗିଲା । ପଟେ ଜୋତା ସିଲେଇ କରିସାରି ତାକୁ ଭଲକରି ଦେଖିଲା । ସେଥିରେ କିଛି ଦୋଷ ଦେଖିପାରିଲା ନାହିଁ । ସେ କାମ ବନ୍ଦକରି ତାର ହତିଆର ପ୍ରଭୃତି ସଜାଡ଼ି ରଖିଲା ଓ ଘର ଓଳାଇ ସଫା କରିଦେଲା । ତାହା ପରେ ସେ ଟେବୁଲ ଉପରେ ଦୀପଟି ରଖି ବାଇବେଲ ପଢ଼ିବାକୁ ବସିଲା । ଗତ ରାତିରେ ସେ ଯେଉଁ ପର୍ଯ୍ୟନ୍ତ ପଢ଼ିଥିଲା, ସେଠାରେ ଗୋଟିଏ ଚିହ୍ନ ଦେଇଥିଲା, ମାତ୍ର ବହିଟି ଫିଟାଇଲାକ୍ଷଣି ଅନ୍ୟ ଏକ ପୃଷ୍ଠା ଖୋଲିଗଲା । ବହି ଖୋଲୁ ଖୋଲୁ ଗତ ରାତିର ସ୍ୱପ୍ନ ତାର ମନେପଡ଼ିଲା । ହଠାତ୍ ତାର ପଛଆଡ଼େ କାହାର ପଦଶବ୍ଦ ଶୁଣାଗଲା ପରି ବୋଧହେଲା । ମାର୍ଟିନ ବୁଲିପଡ଼ି ପଛକୁ ଚାହିଁଲା । ଘରର କାନ୍ଥ ପାଖରେ ଅନ୍ଧାରରେ କେତେଜଣ ଲୋକ ଥିଲାପରି ସେ ଅନୁଭବ କଲା; କିନ୍ତୁ ସେମାନଙ୍କୁ ଚିହ୍ନି ପାରିଲା ନାହିଁ । ତାର କାନ ପାଖରେ ଗୋଟିଏ ସ୍ୱର ଶୁଣାଗଲା—'ମାର୍ଟିନ, ମାର୍ଟିନ, ମୋତେ ଚିହ୍ନି ପାରୁନାହଁ ।''

ମାର୍ଟିନ ଆଶ୍ଚର୍ଯ୍ୟ ହୋଇ ନିଜକୁ ନିଜେ ପଚାରିଲା, "ଏ କିଏ ?"

ମାର୍ଟିନ ଶୁଣିବାକୁ ପାଇଲା—"ମୁଁ ଆସିଛି ପରା !" କାନ୍ଥ ମୂଳର ଅନ୍ଧାର ଭିତରୁ ଷ୍ଟେପାନିକ ହସି ହସି ମାର୍ଟିନ ପାଖକୁ ଆସି କୁଆଡ଼େ ଉଭେଇଗଲା ।

ପୁଣି ଶୁଣାଗଲା—"ମୁଁ ଆସିଛି ।" ଅନ୍ଧାରୁଆ କାନ୍ଥ ମୂଳରୁ ଗୋଟିଏ ସ୍ତ୍ରୀଲୋକ କୋଳରେ ଶିଶୁଟିଏ ଧରି ମାର୍ଟିନ ପାଖକୁ ଚାଲି ଆସିଲା । ମାର୍ଟିନ ତାର ହସ ହସ ମୁହଁକୁ ଚାହୁଁଚାହୁଁ ଶିଶୁଟି ସହିତ ସେ କୁଆଡ଼େ ଉଭେଇଗଲା ।

ଆଉ ଗୋଟିଏ ସ୍ୱର କହିଲା, "ମୁଁ ଆସିଛି ।" ମାର୍ଟିନ ଦେଖିଲା, ଫଳବିକାଳି ବୁଢ଼ୀ ଓ ଆଉ ଚୋରି କରିଥିବା ପିଲା ହସିହସି ତା ପାଖକୁ ଆସି ଉଭେଇଗଲେ ।

ମାର୍ଟିନର ଅନ୍ତରାତ୍ମା ଆନନ୍ଦରେ ଭୋଳ ହୋଇଗଲା । ସେ ଚଷମା ପିନ୍ଧି ବାଇବେଲକୁ ବୁଝିଲା । ଯେଉଁ ପୃଷ୍ଠା ଖୋଲିଥିଲା, ତାର ପ୍ରଥମେ ଥିଲା—"ମୁଁ କ୍ଷୁଧାର୍ତ୍ତ ହୋଇଥିଲି—ତୁମେ ମୋତେ ମାଂସ ଦେଲ । ମୁଁ ତୃଷାର୍ତ୍ତ ହୋଇଥିଲି, ତୁମେ ମୋତେ ଜଳ ଦେଲ । ମୁଁ ଅପରିଚିତ ହେଲେହେଁ ତୁମେ ମୋତେ ତୁମ ଘର ଭିତରକୁ ନେଲ ।" ପୃଷ୍ଠାର ଶେଷ କେତେ ଧାଡ଼ିରେ ଲେଖାଥିଲା—"ମୋର ଜଣେ ଭାଇ ପ୍ରତି ତୁମେ ଏହା କରିଥିବାରୁ, ସାମାନ୍ୟ ହେଲେ ସୁଦ୍ଧା ତାହା ତୁମେ ମୋ ପ୍ରତି କରିଅଛ ।"

ଏବେ ମାର୍ଟିନ ବୁଝିପାରିଲା ଯେ ତାର ସ୍ୱପ୍ନ ସଫଳ ହୋଇଛି । ତ୍ରାଣକର୍ତ୍ତା ପ୍ରଭୁ ଯୀଶୁ ସେଦିନ ପ୍ରକୃତରେ ତାର ଘରକୁ ଆସିଥିଲେ ଓ ସେ ତାଙ୍କୁ ଉପଯୁକ୍ତ ଅଭ୍ୟର୍ଥନା କରିଛି ।

## କୁକ୍‌କୁଡ଼ା ଅଣ୍ଡା ଭଳି ଗହମଟିଏ

ଥରେ କେତୋଟି ପିଲା ଦୁଇଟି ପାହାଡ଼ର ମଝିରେ ଥିବା ସମଭୂମିରେ ଖେଳୁ ଖେଳୁ ଗୋଟିଏ ଅଦ୍ଭୁତ ଜିନିଷ ପାଇଲେ । ଏହା ଠିକ୍ ଗୋଟିଏ ଗହମପରି ଦେଖା ଯାଉଥିଲେହେଁ ଏହାର ଆକାର ଗୋଟିଏ କୁକ୍‌କୁଡା ଅଣ୍ଡା ଠାରୁ ଛୋଟ ନଥିଲା । ଜଣେ ବାଟୋଇ ପିଲାଙ୍କ ପାଖେ ଏହି ବିଚିତ୍ର ଜିନିଷଟି ଦେଖି ଅଣାଏ ପଇସା ଦେଇ ସେମାନଙ୍କଠାରୁ ଏଇଟି କିଣିଆଣିଲା । ସହରରେ ପହଞ୍ଚି ସେ ଏହାକୁ ଅଧିକ ମୂଲ୍ୟରେ ରାଜାଙ୍କୁ ବିକି କଲା ।

ଏହି ବିଚିତ୍ର ଜିନିଷଟି କଅଣ ତାହା ଜାଣିବା ଲାଗି ରାଜା ଦେଶର ଜ୍ଞାନୀ ଲୋକମାନଙ୍କୁ ଡକାଇ ପଚାରିଲେ । ଅନେକ ଚିନ୍ତା କରି କରି ସେମାନେ କୌଣସି ସିଦ୍ଧାନ୍ତରେ ପହଞ୍ଚି ପାରିଲେ ନାହିଁ । ରାଜା ସେହି ଜିନିଷଟିକୁ ଝରକା ପାଖରେ ରଖି ଦେଇଥିଲେ । ଥରେ ଗୋଟିଏ କୁକ୍‌କୁଡ଼ା ଆସି ଥୁମ୍ପି ଥୁମ୍ପି ସେଥିରେ ଗୋଟିଏ ଛୋଟ କଣା କରିଦେଲା । ତହୁଁ ଜଣାଗଲା ଯେ ଏହା ଗୋଟିଏ ଗହମ ।

ପଣ୍ଡିତମାନେ ରାଜାଙ୍କୁ ଏହା ଜଣାଇବାରୁ ସେ ନିତାନ୍ତ ବିସ୍ମିତ ହୋଇଗଲେ । ସେଭଳି ଗହମ କେବେ ଓ କେଉଁଠାରେ ଚାଷ ହେଉଥିଲା ସ୍ଥିର କରିବାପାଇଁ ରାଜା ପଣ୍ଡିତମାନଙ୍କୁ ଆଦେଶ ଦେଲେ । ପଣ୍ଡିତମାନେ ବହୁତ ଚିନ୍ତା କଲେ, ଅନେକ ଶାସ୍ତ୍ର ପରାମର୍ଶ କଲେ; କିନ୍ତୁ ଏଭଳି ଗହମ ବିଷୟରେ କୌଣସି ବିବରଣୀ ପାଇ ପାରିଲେ ନାହିଁ । ସେମାନେ ଉତ୍ତର କଲେ, "ମହାରାଜ, ଆମେ ଅନେକ ଶାସ୍ତ୍ର ଖୋଜିଲୁ; କିନ୍ତୁ କୌଣସିଠାରେ ଏଭଳି ବଡ଼ ଦାନା ଗହମର ଉଲ୍ଲେଖ ଦେଖିଲୁ ନାହିଁ । ଋଷୀମାନଙ୍କୁ ପଚାରିଲେ-ହୁଏତ ସେମାନେ ଏପରି ବଡଦାନା ଗହମର ବିଷୟ ନିଜ ପିତା ବା ପିତାମହଙ୍କଠାରୁ ଶୁଣିପାରିଥାନ୍ତି—ସେହିମାନେହିଁ ଏ ସନ୍ଦେହ ମୋଚନ କରିପାରନ୍ତି ।"

ଜଣେ ବୃଦ୍ଧ କୃଷକକୁ ଡାକିବାପାଇଁ ରାଜା ଭୃତ୍ୟମାନଙ୍କୁ ଆଦେଶ ଦେଲେ । ଭୃତ୍ୟମାନେ ଅତି ବୃଦ୍ଧ କୃଷକର ସନ୍ଧାନ ପାଇ ତାହାକୁ ରାଜାଙ୍କ ପାଖକୁ ନେଇଗଲେ । ଲୋକଟିର ଅଣ୍ଟା ନଇଁ ଯାଇଥିଲା ଓ ତାର ଚମ ଓହଳି ପଡ଼ିଥିଲା । ପାଟିରେ ଗୋଟିଏ ହେଲେ ଦାନ୍ତ ନଥିଲା, ମୁଣ୍ଡର ବାଳଗୁଡ଼ିକ ଏକବାରେ ଧୋଳ ପରି ଦିଶୁଥିଲା । ତାର ଆଖି ଯୋଡ଼ିକୁ ପ୍ରାୟ କିଛି ଦେଖାଯାଉ ନଥିଲା । ସେ ଦୁଇଟି ବାଡ଼ିରେ ଭର ଦେଇ ଅତି କଷ୍ଟରେ ରାଜାଙ୍କ ପାଖକୁ ଗଲା ।

ରାଜା ତାକୁ ଗହମଟି ଦେଖାଇଲେ; କିନ୍ତୁ ତାର ଦେଖିବାର ଶକ୍ତି ନଥିଲା । ସେ ଗହମଟିକୁ ହାତରେ ଧରି ଅନେକ ପରୀକ୍ଷା କଲା । ରାଜା ପଚାରିଲେ, "ଏଭଳି ବଡ଼ ବଡ଼ ଗହମ କେଉଁଠାରେ ଚାଷ ହେଉଥିଲା ? ତୁମେ ଏଭଳି ଗହମ କେବେ ଚାଷ କରିଥିଲ ? କିମ୍ବା କୌଣସିଠାରୁ କିଣିଥିଲ ?"

ବୃଦ୍ଧ ଭଲରୂପେ ଶୁଣିପାରୁନଥିଲା, ତେଣୁ ରାଜାଙ୍କୁ ବଡ ପାଟିରେ ଅନେକ ଥର କହିବାକୁ ପଡ଼ିଲା । ଯାହାହେଉ ଶେଷରେ ସେ ରାଜାଙ୍କ ପ୍ରଶ୍ନ ବୁଝିପାରି ଉତ୍ତର କଲା, "ନା, ମହାରାଜ ! ମୁଁ କେବେ ଏଭଳି ଗହମ ଚାଷ କରି ନାହିଁ କି ଅମଳ କରିନାହିଁ । କେବେ ମଧ୍ୟ କିଣି ନାହିଁ । ତେବେ

ମୋର ବାପା ଅଛନ୍ତି । ତାଙ୍କୁ ପଚାରିଲେ ସେ ହୁଏତ ଏଭଳି ବଡ଼ ଗହମ ବିଷୟରେ କିଛି କହିପାରିବେ ।"

ରାଜା ଏହି ବୃଦ୍ଧର ପିତାଙ୍କୁ ଡକାଇ ପଠାଇଲେ । ରାଜଭୃତ୍ୟମାନେ ତାଙ୍କୁ ରାଜାଙ୍କର ଆଦେଶ ଜଣାଇବାରୁ ସେ ଆସିଲେ । ସେ ଗୋଟିଏ ବାଡ଼ିରେ ଭରା ଦେଇ ଚାଲୁଥିଲେ; ତାଙ୍କର ଦୃଷ୍ଟିଶକ୍ତି ନିତାନ୍ତ ମନ୍ଦ ନଥିଲା । ସେ ଆସି ଉପସ୍ଥିତ ହେବାରୁ ରାଜା ତାଙ୍କୁ ଗହମଟି ଦେଖାଇ ପଚାରିଲେ, "ଏଭଳି ବଡ ବଡ ଗହମ କେଉଁଠାରେ ଚାଷ ହେଉଥିଲା ? ତୁମେ ଏଭଳି ଗହମ କେବେ ନିଜ କ୍ଷେତରେ ଚାଷ କରିଥିଲ କି ? କେବେ କିଣିଛ କି ?"

ଏହି ଦ୍ୱିତୀୟ ବୃଦ୍ଧଙ୍କର ଶ୍ରବଣଶକ୍ତି କ୍ଷୀଣ ଥିଲା ସତ୍ୟ, କିନ୍ତୁ ତାଙ୍କ ପୁତ୍ରରପରି ନିତାନ୍ତ କ୍ଷୀଣ ନଥିଲା । ତେଣୁ ରାଜାଙ୍କୁ ବାରମ୍ବାର ପଚାରିବାକୁ ପଡ଼ିଲାନାହିଁ ।

ସେ ଗହମଟିକୁ ପରୀକ୍ଷା କରି କହିଲେ, "ନା, ମୁଁ କେବେ ଏଭଳି ଗହମ ଚାଷ କିମ୍ବା ଅମଳ କରି ନାହିଁ । ମୋର ବାଲ୍ୟବୟସ ଥିଲାବେଳେ ଖାଇବା ଜିନିଷ କିଣାବିକା ହେଉନଥିଲା । ଟଙ୍କା ପଇସାର କାରବାର ନଥିଲା । ପ୍ରତ୍ୟେକ ଲୋକ ନିଜ ଖାଇବା ପାଇଁ ଗହମ ପ୍ରଭୃତି ଚାଷ କରୁଥିଲେ । ଦରକାର ବେଳେ ଆପଣା ଭିତରେ ଦିଆନିଆ କରୁଥିଲେ, କିନ୍ତୁ କେହି ପଇସା ନେଇ ଖାଦ୍ୟଦ୍ରବ୍ୟ ବିକୁନଥିଲେ । ସେକାଳରେ ଗହମର ଆକାର ଆଜିକାଲିକାର ଗହମଠାରୁ ବଡ଼ ଥିଲା ସତ, କିନ୍ତୁ ଏତେ ବଡ଼ ନଥିଲା । ମୋର ବାପାଙ୍କଠାରୁ ଶୁଣିଛି ସେ ତାଙ୍କ ଯୁବାବେଳେ ଗହମ ପ୍ରଭୃତି ଶସ୍ୟର ଆକାର ଖୁବ୍ ବଡ଼ ଥିଲା । ତାଙ୍କୁ ପଚାରିଲେ ସେ ଆପଣଙ୍କର ସନ୍ଦେହ ଦୂର କରିପାରନ୍ତି ।"

ରାଜା ବିସ୍ମିତ ହୋଇ ଏହି ଦ୍ୱିତୀୟ ବୃଦ୍ଧଙ୍କର ପିତାଙ୍କୁ ଡକାଇ ଆଣିଲେ । ରାଜା ଡାକୁଥିବା ଶୁଣି ସେ ଚାଲି ଚାଲି ଆସି ରାଜାଙ୍କ ସମକ୍ଷରେ ଉପସ୍ଥିତ ହେଲେ । ଚାଲିବାପାଇଁ ସେ କୌଣସି ବାଡ଼ିର ସାହାଯ୍ୟ ନେଉନଥିଲେ । ତାଙ୍କର ଶ୍ରବଣ ଓ ଦୃଷ୍ଟି ଶକ୍ତି ତୀକ୍ଷ୍ଣ ଥିଲା । ତୁଣ୍ଡରୁ ଗୋଟିଏ ହେଲେ ଦାନ୍ତ ପଡ଼ି ନଥିଲା । ତେଣୁ ସେ ସ୍ପଷ୍ଟ ସ୍ୱରରେ କଥା କହି ପାରୁଥିଲେ ।

ଗହମଟି ଦେଖାଇ ରାଜା ତାଙ୍କୁ ପଚାରିଲେ, "ଏଭଳି ବଡ଼ ବଡ଼ ଗହମ କେବେ କେଉଁଠାରେ ଚାଷ ହେଉଥିଲା କହିପାରିବ କି ?"

ବୃଦ୍ଧ ଗହମଟିକୁ ହାତରେ ଓଲଟପାଲଟ କରି ଦେଖୁ ଦେଖୁ କହିଲେ, "ଅନେକ କାଳରୁ ଏଭଳି ଗହମଟିଏ ଦେଖିନଥିଲି ।" ସେ ସେଥିରୁ ଟିକିଏ କାମୁଡ଼ି ଚାଖି କହିଲେ, "ହଁ, ଠିକ୍ ସେଇ କାଳକା ଗହମ ।"

ରାଜା ପୁଣି କହିଲେ, "କହିଲ ଦେଖି, କେବେ ଓ କେଉଁଠାରେ ଏଭଳି ଗହମ ଚାଷ ହେଉଥିଲା ? ତୁମେ ଏଭଳି ଗହମ କେବେ ନିଜ ଜମିରେ କରିଥିଲ ଅଥବା କେବେ କୌଣସିଠାରୁ କିଣିଥିଲ ?"

ବୃଦ୍ଧ ଉତ୍ତର କଲେ, "ମୋର ପିଲାଦିନେ ଓ ଯୁବା ଅବସ୍ଥାରେ ଏଭଳି ବଡ଼ ବଡ଼ ଗହମ ସବୁଆଡ଼େ ଚାଷ ହେଉଥିଲା । ପିଲାଦିନେ ମୁଁ ଏଇ କାଳର ଗହମର ରୁଟି ଖାଇ ବଢ଼ିଥିଲି । ଅନ୍ୟମାନଙ୍କୁ ଆମେ ସେହି ଗହମର ରୁଟି ଖାଇବାକୁ ଦେଉଥିଲୁ । ଆମେ ଏଇଭଳି ବଡ଼ ଗହମ ଚାଷକରୁଥିଲୁ; ଅଉ ଅମଳ ମଧ୍ୟ କରୁଥିଲୁ ।"

ରାଜା ପୁଣି ପଚାରିଲେ, "ତୁମେ କଅଣ ନିଜ ଜମିରୁ ନିଜର ସବୁ ଗହମ ଅମଳ କରୁଥିଲ ନା କେବେ ଅନ୍ୟଠାରୁ କିଛି କିଣୁଥିଲ ?"

ଟିକିଏ ହସିଦେଇ ବୃଦ୍ଧ ଉତ୍ତର କଲେ, "ଆମ ଅମଳରେ ଖାଦ୍ୟ-ଦ୍ରବ୍ୟ ବିକିବା ବା କିଣିବାଭଳି ପାପକଥା କେହି ଚିନ୍ତା ମଧ୍ୟା କରୁନଥିଲି । ଟଙ୍କା ପଇସା କଅଣ ଆମେ ଜାଣି ନଥିଲୁ । ପ୍ରତ୍ୟେକ ଲୋକ ନିଜପାଇଁ ଯଥେଷ୍ଟ ଶସ୍ୟ ଉତ୍ପାଦନ କରୁଥିଲି ।"

ରାଜା ପ୍ରଶ୍ନ କଲେ, "ତୁମର ଯେଉଁ ଜମିରୁ ଶସ୍ୟ ଉତ୍ପାଦନ କରୁ-ଥିଲ, ତାହା କେଉଁଠି ଥିଲା ? ତୁମର ଚାଷଜମି କେଉଁଠି ଥିଲା ?"

ବୃଦ୍ଧ ବିସ୍ମିତ ହୋଇ ଉତ୍ତର କଲେ, "ମୋର ଜମି କାହିଁକି ? ଈଶ୍ୱରଙ୍କର ଏ ଯେଉଁ ବିଶାଳ ପୃଥିବୀ ସେ ଥିଲା ମୋର ଚାଷକ୍ଷେତ । ଜମିର କିଛି ମୂଲ୍ୟ ନଥିଲା; କେହି କୌଣସି ଜମିକୁ 'ମୋର ଜମି' ବୋଲି କହୁନଥିଲା । ମନୁଷ୍ୟର ନିଜର ବୋଲି ଯଦି କିଛି ଥିଲା, ତାହା ହେଉଛି ତାର ପରିଶ୍ରମ ।"

ରାଜା ପୁଣି କହିଲେ, "ଦୟାକରି ମୋର ଆଉ ଦୁଇଟି ପ୍ରଶ୍ନର ଉତ୍ତର ଦିଅ । ମୋର ପ୍ରଥମ ପ୍ରଶ୍ନ ହେଉଛି, ଆଗେ ଏହି ପୃଥିବୀରୁ ଏପରି ଶସ୍ୟ ଉତ୍ପନ୍ନ ହେଉଥିଲା; ଏବେ ହେଉନାହିଁ କାହିଁକି ? ଦ୍ୱିତୀୟତଃ, ତୁମର ନାତି ଦୁଇଟି ବାଡ଼ି ଧରି ଚାଲୁଛି, ପୁଅ ଗୋଟିଏ ବାଡ଼ି ଧରିଲେ ଚାଲି-ପାରୁଛି; କିନ୍ତୁ ତୁମର ଆଦୌ ବାଡ଼ି ଦରକାର ହେଉନାହିଁ । ତୁମେ ତିନିଙ୍କ ଭିତରେ ବୟସରେ ସବୁଠାରୁ ବଡ ହୋଇଥିଲେହେଁ, ତୁମର ଆଖି ଉଜ୍ଜ୍ୱଳ, ଶ୍ରବଣଶକ୍ତି ତୀକ୍ଷ୍ଣ; ଦାନ୍ତ ପଡ଼ି ନାହିଁ । ଏଥିର କାରଣ କଅଣ ?"

ବୃଦ୍ଧ ଉତ୍ତର କଲେ, "ଏହାର କାରଣ ହେଉଛି, ଲୋକେ କ୍ରମେ ନିଜେ ପରିଶ୍ରମ କରି ଖାଦ୍ୟ ଅର୍ଜନ କରିବା ସ୍ୱଭାବ ଛାଡ଼ିଦେଉଛନ୍ତି ଓ ଅଧିକରୁ ଅଧିକ ଅନ୍ୟ ଲୋକଙ୍କ ପରିଶ୍ରମ ଉପରେ ନିର୍ଭର କରୁଅଛନ୍ତି । ପୂର୍ବକାଳରେ ଲୋକେ ଈଶ୍ୱରଙ୍କର ନିୟମମାନ ପାଳି ଜୀବନ କଟାଉ-ଥିଲେ । ସେମାନେ ନିଜେ ଯାହା ଉତ୍ପାଦନ କରୁଥିଲେ ତାହାକୁ ନିଜର ବୋଲି ବୁଝୁଥିଲେ ଓ ଅପରର ଉତ୍ପାଦନ ଉପରେ ଆଖି ପକାଉ ନଥିଲେ । ଏବେ ଲୋକେ ସେପରି କରୁନଥିବାରୁ ଏହା ଘଟୁଛି ।"

# ସୁରାଟର କଫି ହୋଟେଲ

ଭାରତବର୍ଷର ପଶ୍ଚିମ ଉପକୂଳରେ ସୁରାଟ ବୋଲି ଗୋଟିଏ ନଗର ଅଛି । ଏଠାରେ ଗୋଟିଏ କଫି ହୋଟେଲ ଥିଲା । ପୃଥିବୀର ନାନାଦେଶରୁ ଯାତ୍ରୀ ଓ ବ୍ୟବସାୟୀମାନେ ଆସି ଏହି ହୋଟେଲରେ ଏକତ୍ର ହେଉଥିଲେ ଏବଂ ସେମାନଙ୍କ ଭିତରେ ନାନା ବିଷୟରେ କଥାବାର୍ତ୍ତା ହେଉଥିଲା ।

ଦିନେ ପାରସ୍ୟର ଜଣେ ବଡ଼ ଦାର୍ଶନିକ ପଣ୍ଡିତ ସେହି ହୋଟେଲରେ ପହଞ୍ଚିଲେ । ବହୁ ଶାସ୍ତ୍ର ଅଧ୍ୟୟନ କରି ସେ ଈଶ୍ୱରଙ୍କ ବିଷୟରେ ଟୀକାର ଚିନ୍ତା କରିଥିଲେ ଓ ସେ ବିଷୟରେ ନିଜେ ମଧ୍ୟ କେତେ ଖଣ୍ଡି ଗ୍ରନ୍ଥ ଲେଖିଥିଲେ । ଈଶ୍ୱରଙ୍କ ସମ୍ବନ୍ଧରେ ଅନେକ ପଢ଼ି, ଚିନ୍ତାକରି ଓ ଗ୍ରନ୍ଥ ଲେଖି ଶେଷରେ ସେ ପାଗଳପ୍ରାୟ ହୋଇଗଲେ । ଈଶ୍ୱରଙ୍କ ଅସ୍ତିତ୍ୱରେ ତାଙ୍କର ଆସ୍ଥା ରହିଲା ନାହିଁ । ପାରସ୍ୟର ସମ୍ରାଟ୍ ତାଙ୍କର ନାସ୍ତିକ ମତ ଜାଣିପାରି ତାଙ୍କୁ ରାଜ୍ୟରୁ ନିର୍ବାସିତ କରିଦେଇଥିଲେ ।

ଏହି ହତଭାଗ୍ୟ ପଣ୍ଡିତ ସମଗ୍ର ଜୀବ ଜଗତର ଆଦି କାରଣ ବିଷୟରେ ଚିନ୍ତା କରୁ କରୁ ନିଜେ ଘୋର ବିପଦରେ ପଡ଼ିଲେ । ସେ ଆପଣାର ବୁଦ୍ଧି ଶକ୍ତି ହରାଇଥିବା ବୁଝିନପାରି ଭାବିଲେ ଯେ ସମଗ୍ର ଜଗତକୁ ପରିଚାଳିତ କରିବା ପାଇଁ ମନୁଷ୍ୟର ଜ୍ଞାନଶକ୍ତିଠାରୁ ଉଚ୍ଚତର ଅନ୍ୟ କୌଣସି ଶକ୍ତି ନାହିଁ ।

ଉକ୍ତ ଦାର୍ଶନିକ ପଣ୍ଡିତଙ୍କ ସହିତ ତାଙ୍କର ଜଣେ ଭୃତ୍ୟ ରହିଥିଲା । ସେ ଯେଉଁଠାକୁ ଯାଉଥିଲେ ଭୃତ୍ୟ ମଧ୍ୟ ସେଠାକୁ ଯାଉଥିଲା । ପଣ୍ଡିତେ ହୋଟେଲରେ ପ୍ରବେଶ କରିବାରୁ ସେ ଦ୍ୱାରଦେଶରେ ତାଙ୍କୁ ଅପେକ୍ଷାକରି ରହିଲା । ବାହାରେ ଖଣ୍ଡିଏ ପଥର ଉପରେ ବସି ସେ କୋମଳ ସୂର୍ଯ୍ୟ-କିରଣ ଉପଭୋଗ କରୁଥାଏ । ପଣ୍ଡିତ ମହାଶୟ ହୋଟେଲରେ ପ୍ରବେଶ କରି ଗୋଟିଏ ଚଉକିରେ ବସିପଡ଼ିଲେ ଓ କିଛି ଅଫିମ ପାଣି ପିଇବାକୁ

ମାଗିଲେ । ତାହା ପିଇବାର କିଛି ସମୟ ପରେ ତାଙ୍କୁ ନିଶା ଲାଗିଆସିଲା । ସେ ଭୃତ୍ୟଙ୍କୁ ଡାକି କହିଲେ, "ଆରେ, ଈଶ୍ୱର ଅଛନ୍ତି କି ନାହିଁ କହିଲୁ ?"

ଭୃତ୍ୟ ତାର ଝୁଲା ମୁଣିରୁ କାଠର ଗୋଟିଏ ଛୋଟ ମୂର୍ତ୍ତି ବାହାର-କରି କହିଲା, "ହଁ, ଈଶ୍ୱର ନିଶ୍ଚୟ ଅଛନ୍ତି । ଦେଖନ୍ତୁ, ଏଇ ଈଶ୍ୱର ମୋତେ ମୋର ଜନ୍ମ କାଳରୁ ରକ୍ଷା କରି ଆସୁଛନ୍ତି । ଏହି ଈଶ୍ୱର ଯେଉଁ କାଠରେ ତିଆରି ସେ କାଠର ଗଛକୁ ଆମ ଦେଶର ସମସ୍ତେ ପୂଜା କରନ୍ତି ।

ହୋଟେଲରେ ଅନ୍ୟ ଯେଉଁମାନେ ବସିଥିଲେ, ସେମାନେ ବସ୍ତୁତଃ ହୋଇ ପଣ୍ଡିତ ଓ ତାଙ୍କ ଭୃତ୍ୟର କଥା ଶୁଣୁଥିଲେ । ସେମାନଙ୍କୁ ପଣ୍ଡିତଙ୍କର ପ୍ରଶ୍ନ ଯେପରି ଅଦ୍ଭୁତ ବୋଧହେଲା, ଭୃତ୍ୟର ଉତ୍ତର ତହିଁରୁ ଅଧିକ ଆଶ୍ଚର୍ଯ୍ୟ-ଜନକ ବୋଧହେଲା ।

ସେଠାରେ ଜଣେ ବ୍ରାହ୍ମଣ ବସିଥିଲେ । ଭୃତ୍ୟର କଥା ଶୁଣି ସେ ତାକୁ କହିଲେ, "ଆରେ ମୂର୍ଖ ! ତୁ କଅଣ ବିଶ୍ୱାସ କରୁଛୁ ଯେ ଈଶ୍ୱର ଜଣେ ଲୋକର ଝୁଲାମୁଣି ଭିତରେ ରହିପାରନ୍ତି ? ଏକମାତ୍ର ବ୍ରହ୍ମ ହେଉଛନ୍ତି ଈଶ୍ୱର । ସେଇ ବ୍ରହ୍ମ ସମଗ୍ର ଜଗତକୁ ସୃଷ୍ଟି କରିଅଛନ୍ତି । ବ୍ରହ୍ମହିଁ ଏକମାତ୍ର ମହାନ୍ ଈଶ୍ୱର । ତାଙ୍କ ଉଦ୍ଦେଶ୍ୟରେ ଗଙ୍ଗାନଦୀ ତୀରରେ ବିଶାଳ ମନ୍ଦିରମାନ ନିର୍ମାଣ କରାଯାଇଅଛି । ବ୍ରାହ୍ମଣମାନେ ତାଙ୍କର ପୂଜା କରି-ଥାନ୍ତି । କେବଳ ବ୍ରାହ୍ମଣମାନେ ପ୍ରକୃତ ଈଶ୍ୱରଙ୍କର ପରିଚୟ ପାଇଅଛନ୍ତି, ଅନ୍ୟ କେହି ପାଇନାହାନ୍ତି । କେତେ ସହସ୍ର ବର୍ଷ ଗତ ହେଲାଣି; ତଥାପି ଯୁଗେ ଯୁଗେ ବ୍ରାହ୍ମଣମାନଙ୍କର ପ୍ରାଧାନ୍ୟ ରହିଆସିଛି । ଏହାର କାରଣ ହେଉଛି, ଈଶ୍ୱରରୂପୀ ବ୍ରହ୍ମ ହେଉଛନ୍ତି ସେମାନଙ୍କର ରକ୍ଷାକର୍ତ୍ତା ।"

ବ୍ରାହ୍ମଣ ଭାବିଥିଲେ, ତାଙ୍କର ଯୁକ୍ତିକୁ ସମସ୍ତେ ଗ୍ରହଣ କରିନେବେ । କିନ୍ତୁ ସେଠାରେ ଜଣେ ୟିହୁଦୀ ବ୍ୟବସାୟୀ ଥିଲେ । ସେ ବ୍ରାହ୍ମଣଙ୍କ କଥାର ପ୍ରତିବାଦ କରି କହିଲେ, "ନା, ଆପଣ ଯାହା କହିଲେ ତାହା-ଠିକ୍ ନୁହେଁ । ପ୍ରକୃତ ଈଶ୍ୱରଙ୍କର ମନ୍ଦିର ଭାରତବର୍ଷରେ ନାହିଁ । କେବଳ ବ୍ରାହ୍ମଣମାନଙ୍କୁ ଯେ ଈଶ୍ୱର ରକ୍ଷା କରନ୍ତି, ତାହା ମଧ୍ୟ ନୁହେଁ । ବ୍ରାହ୍ମଣ-ମାନଙ୍କର ଈଶ୍ୱର ପ୍ରକୃତ ଈଶ୍ୱର ନୁହନ୍ତି । ଆବ୍ରାହାମ, ଅଇଜାକ୍, ଜେକବ୍—ଏମାନଙ୍କର ଈଶ୍ୱର ହେଉଛନ୍ତି ପ୍ରକୃତ ଈଶ୍ୱର । ଯେ

ଈଶ୍ୱର କେବଳ ତାଙ୍କର ପ୍ରିୟ ଇସ୍ରେଇଲବାସୀଙ୍କୁ ରକ୍ଷା କରନ୍ତି; ଆଉ କାହାରିକୁ ରକ୍ଷା କରନ୍ତି ନାହିଁ । ସୃଷ୍ଟିର ପ୍ରାରମ୍ଭରୁ ଆମର ୟୀହୁଦୀ ଜାତି ଈଶ୍ୱରଙ୍କର ପ୍ରିୟ ହୋଇ ରହିଛନ୍ତି । ଅବଶ୍ୟ ଏବେ ଆମେ ୟୀହୁଦୀ ଜାତି ସମଗ୍ର ପୃଥିବୀରେ ଇତସ୍ତତଃ ବିକ୍ଷିପ୍ତ ହୋଇପଡ଼ିଛୁ; କିନ୍ତୁ ତାହାଦ୍ୱାରା ଈଶ୍ୱର ଆମମାନଙ୍କୁ ପରୀକ୍ଷା କରୁଅଛନ୍ତି । ତାଙ୍କ ଶ୍ରୀମୁଖର ଆଦେଶ ହେଉଛି ଯେ ଦିନେ ସେ ତାଙ୍କର ପ୍ରିୟ ୟୀହୁଦୀ ଜାତିକୁ ଜେରୁଜେଲମରେ ଏକାଠି କରିବେ । ଜେରୁଜେଲମର ମନ୍ଦିର ପ୍ରାଚୀନ ଜଗତର ଏକ ବିସ୍ମୟ ଥିଲା । ସେ ମନ୍ଦିରର ପୂର୍ବ ଗୌରବ ଫେରିଆସିବ ଏବଂ ଇସ୍ରେଇଲ ପୁଣି ସବୁ ଜାତିକୁ ଶାସନ କରିବ ।”

ୟୀହୁଦୀ ବ୍ୟବସାୟୀ ଏହିପରି କହୁ କହୁ ତାଙ୍କର ଚକ୍ଷୁରୁ ଲୋତକ-ଧାର ବହିଆସିଲା । ସେ ଆହୁରି କିଛି କହିଥାଆନ୍ତେ, କିନ୍ତୁ ଉପସ୍ଥିତ ଭଦ୍ରବ୍ୟକ୍ତିମାନଙ୍କ ମଧ୍ୟରୁ ଜଣେ କାଥୋଲିକ୍ ଧର୍ମପ୍ରଚାରକ ତାଙ୍କୁ ବାଧା ଦେଇ କହିଲେ, “ଆପଣ ଯାହା କହିଲେ, ତାହା ଅସତ୍ୟ । ଆପଣ ଈଶ୍ୱରଙ୍କ-ଠାରେ ପକ୍ଷପାତିତା ଆରୋପ କରୁଅଛନ୍ତି । ସେ କୌଣସି ଗୋଟିଏ ଜାତିକୁ ଅନ୍ୟଜାତିମାନଙ୍କଠାରୁ ଅଧିକ ଭଲ ପାଇନପାରନ୍ତି । ଯଦି ପ୍ରକୃତରେ ଈଶ୍ୱର କେବେ ଇସ୍ରେଇଲବାସୀଙ୍କ ପ୍ରତି ବିଶେଷ ଅନୁଗ୍ରହ ପ୍ରଦର୍ଶନ କରି-ଥିଲେ, ତେବେ ତାହା ହେଉଛି, ଊଣେଇଶଶହ ବର୍ଷ ତଳର କଥା । ସେମାନେ ଈଶ୍ୱରଙ୍କର ବିରାଗଭାଜନ ହେବାରୁ ଈଶ୍ୱର ସେମାନଙ୍କୁ ଇତସ୍ତତଃ ବିକ୍ଷିପ୍ତ କରିଦେଇଅଛନ୍ତି । ସେଥିପାଇଁ ଆଜିକାଲି କେହି ୟୀହୁଦୀଧର୍ମ ଗ୍ରହଣ କରୁନାହାନ୍ତି । ସେ ଧର୍ମ ଏବେ ମୃତପ୍ରାୟ । କ୍ୱଚିତ୍ ଜଣେଅଧେ ୟୀହୁଦୀ ଦେଖାଯାଉଅଛନ୍ତି । ଈଶ୍ୱର କୌଣସି ଗୋଟିଏ ଜାତିକୁ ବିଶେଷ ଅନୁଗ୍ରହ ଦେଖାନ୍ତି ନାହିଁ । ତ୍ରାଣ ପାଇବା ନିମନ୍ତେ ଯେଉଁମାନେ ରୋମାନ କାଥଲିକ ଧର୍ମସମ୍ପ୍ରଦାୟର ଆଶ୍ରୟ ନିଅନ୍ତି, ଈଶ୍ୱର ସେମାନଙ୍କୁ ଆହ୍ୱାନ କରିନଥାନ୍ତି । କାଥଲିକ୍ ସମ୍ପ୍ରଦାୟର ଆଶ୍ରୟ ବିନା ତ୍ରାଣ ପାଇବାର ଅନ୍ୟ ପନ୍ଥା ନାହିଁ ।”

ସେଠାରେ ଜଣେ ପ୍ରୋଟେଷ୍ଟାଣ୍ଟ ଧର୍ମ ପ୍ରଚାରକ ଥିଲେ । ସେ କାଥଲିକ ଧର୍ମପ୍ରଚାରକଙ୍କ କଥା ଶୁଣି ଶୁଣି ବିରକ୍ତ ହୋଇ କହିଲେ, “କେବଳ ଯେ ତୁମର ଧର୍ମର ଆଶ୍ରୟ ନେଲେ ମୁକ୍ତି ମିଳିବ, ଏହା କହୁଛ କିପରି ? ଧର୍ମ-

ଗ୍ରନ୍ଥ ବାଇବେଲରେ ପ୍ରଭୁ ଯୀଶୁଖ୍ରୀଷ୍ଟ ଯାହା କହିଅଛନ୍ତି, ତାହାର ଅନୁସାରେ ଯେଉଁମାନେ ଈଶ୍ୱରଙ୍କର ସେବା କରନ୍ତି କେବଳ ସେହିମାନେହିଁ ତ୍ରାଣ ପାଇବେ ।"

ଏହି ସମୟରେ ସୁଲ୍ତାନର ଶୁଲ୍କବିଭାଗରେ କାର୍ଯ୍ୟ କରୁଥିବା ଜଣେ ତୁର୍କ ଉଭୟ ଖ୍ରୀଷ୍ଟିଆନଙ୍କ ପ୍ରତି ଘୃଣାବ୍ୟଞ୍ଜକ ଦୃଷ୍ଟି ନିକ୍ଷେପ କରି କହିଲେ, "ତୁମମାନଙ୍କର ଏ ଧର୍ମରେ ବିଶ୍ୱାସ କରିବା ନିତାନ୍ତ ଭ୍ରମମୂଳକ । ବାରଶହ ବର୍ଷ ହେଲା ମହମ୍ମଦଙ୍କ ପରିଚାଳିତ ମୁସଲମାନ ଧର୍ମ ତୁମମାନଙ୍କ ଧର୍ମର ସ୍ଥାନ ଅଧିକାର କରିଅଛି । ତୁମେମାନେ ନିଶ୍ଚୟ ଜାଣିଥିବ, କିପରି ପ୍ରକୃତ ମୁସଲମାନ ଧର୍ମ ଏବେ ଏସିଆ ଓ ଇଉରୋପ ମହାଦେଶରେ ବ୍ୟାପି ଯାଇଅଛି । ଏପରିକି, ସୁସଭ୍ୟ ଚୀନ ଦେଶରେ ସୁଦ୍ଧା ମୁସଲମାନ ଧର୍ମର ପ୍ରସାର ହେଉଅଛି । ତୁମେମାନେ ସ୍ୱୀକାର କରୁଅଛ ଯେ ଈଶ୍ୱର ୟୀହୁଦୀମାନଙ୍କୁ ତ୍ୟାଗ କରିଅଛନ୍ତି; ତାର ପ୍ରମାଣସ୍ୱରୂପ କହୁଅଛ ଯେ ଏବେ ୟୀହୁଦୀମାନେ ଅପମାନିତ ହେଉଅଛନ୍ତି; ସେ ଧର୍ମର ଆଉ ପ୍ରସାର ନାହିଁ । ତେବେ ସତ୍ୟ କଥା ସ୍ୱୀକାର କର—ମୁସଲମାନ ଧର୍ମ ବିଜୟୀ ହୋଇ ଚତୁର୍ଦ୍ଦିଗରେ ବିସ୍ତୃତ ହେଉଅଛି । ମହମ୍ମଦଙ୍କ ଭକ୍ତମାନଙ୍କ ବ୍ୟତୀତ ଆଉ କେହି ଉଦ୍ଧାର ପାଇପାରିବେ ନାହିଁ । ସେହି ମହମ୍ମଦ ହେଉଛନ୍ତି ଈଶ୍ୱରଙ୍କ ପ୍ରେରିତ ଶେଷ ମହାପୁରୁଷ । ପୁଣି ତାଙ୍କ ଭକ୍ତମାନଙ୍କ ମଧ୍ୟରୁ ଯେଉଁମାନେ ଓମାରଙ୍କୁ ଅନୁସରଣ କରନ୍ତି, ସେଇମାନେହିଁ ମୁକ୍ତିର ଅଧିକାରୀ; ଅଲିଙ୍କର ଅନୁସରଣକାରୀମାନେ ମୁକ୍ତି ପାଇପାରିବେ ନାହିଁ; ସେମାନେ ପ୍ରକୃତ ମୁସଲମାନ ନୁହନ୍ତି ।"

ପାରସ୍ୟର ନାସ୍ତିକ ପଣ୍ଡିତ ଜଣକ ଏହି ଆଲିଙ୍କ ସମ୍ପ୍ରଦାୟର ଅନ୍ତର୍ଭୁକ୍ତ ଥିଲେ । ତେଣୁ ସେ ପୂର୍ବବର୍ତ୍ତୀ ବକ୍ତାଙ୍କର ଉକ୍ତି ଖଣ୍ଡନ କରିବାକୁ ଇଚ୍ଛା କରିଥିଲେ । କିନ୍ତୁ ଏଥି ମଧ୍ୟରେ ନାନା ଧର୍ମ ଓ ନାନା ସମ୍ପ୍ରଦାୟର ଉପସ୍ଥିତ ଭଦ୍ରବ୍ୟକ୍ତିମାନଙ୍କ ମଧ୍ୟରେ ଭୀଷଣ ବିବାଦର ସୂତ୍ରପାତ ହୋଇସାରିଥିଲା । ଆବିସିନିଆର ଖ୍ରୀଷ୍ଟିଆନ, ତିବ୍ବତର ଲମା, ଇସ୍ମାଇଲ ସମ୍ପ୍ରଦାୟ, ଅଗ୍ନି-ପୂଜକ—ଏହିପରି ନାନା ଧର୍ମ ଓ ସମ୍ପ୍ରଦାୟର ଲୋକ ସେଠାରେ ଥିଲେ । ଈଶ୍ୱରଙ୍କର ସ୍ୱରୂପ କିଅଣ, କିପରି ତାଙ୍କୁ ପୂଜା କରିବାକୁ ହେବ, ଏସବୁ ବିଷୟରେ ଘୋର ବାଦାନୁବାଦ ଚାଲିଲା । ପ୍ରତ୍ୟେକେ ଯୁକ୍ତି କଲେ ଯେ,

କେବଳ ତାଙ୍କର ଜାତର ଲୋକେ ପ୍ରକୃତ ଈଶ୍ୱରଙ୍କର ପରିଚୟ ପାଇଅଛନ୍ତି ଏବଂ ବିଧିମତେ ତାଙ୍କର ପୂଜା କରିଜାଣନ୍ତି ।

ସମସ୍ତେ ଯୁକ୍ତି ତର୍କରେ ଯୋଗ ଦେଇ ଚିତ୍କାର କରୁଥାଆନ୍ତି; କେବଳ ଜଣେ ଭଦ୍ରଲୋକ ହୋଟେଲର ଗୋଟିଏ କୋଣରେ ନୀରବରେ ବସି ରହିଥାଆନ୍ତି । ସେ ଭଦ୍ରବ୍ୟକ୍ତି ଚୀନଦେଶର ଅଧିବାସୀ ଓ କନଫ୍ୟୁସିଅସ୍‌ଙ୍କର ଭକ୍ତ । ସେ ବସି ଚାହା ପିଉଥାଆନ୍ତି ଓ ସମସ୍ତଙ୍କର ଯୁକ୍ତି ଶୁଣୁଥାଆନ୍ତି; ମାତ୍ର ପଦେ ହେଲେ କିଛି କହୁନଥାଆନ୍ତି ।

ତୁର୍କି ଭଦ୍ରବ୍ୟକ୍ତି ତାଙ୍କୁ ନୀରବ ରହିଥିବାର ଦେଖି କହିଲେ, "ମହାଶୟ, ଆପଣ ମୋର ମତକୁ ସମର୍ଥନ କରନ୍ତୁ । ଆପଣ ତୁନି ହୋଇ ବସିଛନ୍ତି; କିନ୍ତୁ ମୁଁ ଜାଣେ ଆପଣ ମୋ ସହିତ ଏକମତ । ଆପଣଙ୍କ ଚୀନ-ଦେଶର ବଣିକମାନେ ଏଠାକୁ ଆସି ମୋର ସାହାଯ୍ୟ ନେଉଥାଆନ୍ତି । ସେମାନଙ୍କଠାରୁ ଶୁଣିଛି ଯେ ଚୀନରେ ନାନାଧର୍ମ ପ୍ରବେଶ କରିଥିଲେହେଁ ଆପଣମାନେ ମୁସଲମାନ ଧର୍ମକୁ ଶ୍ରେଷ୍ଠ ବୋଲି ସ୍ୱୀକାର କରନ୍ତି ଓ ତାହାକୁ ଆନନ୍ଦରେ ଗ୍ରହଣ କରନ୍ତି । ମୋ କଥାର ସମର୍ଥନ କରି ପ୍ରକୃତ ଈଶ୍ୱର ଓ ତାଙ୍କର ପ୍ରେରିତ ମହାପୁରୁଷ ମହମ୍ମଦଙ୍କ ବିଷୟରେ ଆପଣଙ୍କର ମତ ପ୍ରକାଶ କରନ୍ତୁ ।"

ଅନ୍ୟମାନେ ମଧ୍ୟ ସେହି ଭଦ୍ର ବ୍ୟକ୍ତିଙ୍କୁ କହିଲେ, "ଠିକ୍ କଥା, ଏ ବିଷୟରେ ଆପଣଙ୍କ ମତ କଅଣ, କହନ୍ତୁ ।"

ଚୀନ ଦେଶୀୟ ଭଦ୍ରବ୍ୟକ୍ତି ଚକ୍ଷୁ ମୁଦ୍ରିତ କରି କିଛି ସମୟ ଚିନ୍ତାମଗ୍ନ ରହି ପୁଣି ଚକ୍ଷୁ ମେଲିଲେ । ତାହାପରେ ହାତ ଦୁଇଟି ଗୋଡ଼ ଉପରେ ରଖି ଧୀର ଗମ୍ଭୀର ସ୍ୱରରେ କହିଲେ, "ଭଦ୍ରମହୋଦୟଗଣ, ମୋର ମନେହୁଏ, ନିଜ ନିଜର ଅଭିମାନ ହେତୁ ଲୋକମାନେ ଧର୍ମବିଷୟରେ ଏକମତ ହୋଇ ପାରନ୍ତି ନାହିଁ । ଯଦି ଆପଣମାନେ ଧୈର୍ଯ୍ୟ ଧରି ମୋଠାରୁ ଗୋଟିଏ ଗଳ୍ପ ଶୁଣିବେ, ତାହାହେଲେ ସେହି ଉଦାହରଣ ଦ୍ୱାରା ମୁଁ ପ୍ରକୃତ କଥା ବୁଝାଇ ପାରିବି ବୋଲି ଆଶା କରେ ।"

"ମୁଁ ଏଠାକୁ ଗୋଟିଏ ଇଂରେଜ ଜାହାଜରେ ଆସିଥିଲି । ଜାହାଜଟି ପୃଥିବୀର ନାନା ସ୍ଥାନ ଭ୍ରମଣ କରି ଆସିଥିଲା । ବାଟରେ ଆମେମାନେ ମଧୁର

ଜଳ ସଂଗ୍ରହ କରିବା ପାଇଁ ସୁମାତ୍ରା ଦ୍ୱୀପର ପୂର୍ବ ଉପକୂଳରେ ଓହ୍ଲାଇ-ଥିଲୁଁ । ସେତେବେଳକୁ ଦିବା ଦ୍ୱିପ୍ରହର । ଆମମାନଙ୍କ ମଧ୍ୟରୁ କେତେଜଣ ସମୁଦ୍ରକୂଳରେ ନଡ଼ିଆଗଛର ଛାଇରେ ବସିଥିଲେ । ସେଠାରୁ ଅଳ୍ପ ଦୂରରେ ଗୋଟିଏ ଗ୍ରାମ ଦେଖାଯାଉଥିଲା । ଆମ ଦଳରେ ନାନା ଦେଶ ଓ ନାନା ଜାତିର ଲୋକ ଥିଲେ ।

"ଆମେମାନେ ସେଠାରେ ବସିଥିବା ସମୟରେ ଜଣେ ଅନ୍ଧ ସେଠାକୁ ଆସିଲା । ପରେ ଆମେମାନେ ଶୁଣିଲୁ ଯେ ଲୋକଟି ସର୍ବଦା ସୂର୍ଯ୍ୟଙ୍କ ଆଡ଼କୁ ଚାହିଁବା ଫଳରେ ଏପରି ଅନ୍ଧ ହୋଇଯାଇଅଛି । ସୂର୍ଯ୍ୟଙ୍କ କିରଣକୁ ଧରିବା ଓ ସୂର୍ଯ୍ୟ କଅଣ ଜାଣିବା ସକାଶେ ସେ ସୂର୍ଯ୍ୟଙ୍କୁ ସେପରି ଚାହିଁରହୁଥିଲା ।

ଏହି ଲକ୍ଷ୍ୟରେ ସେ ଅନେକ ଦିନ ପର୍ଯ୍ୟନ୍ତ ସୂର୍ଯ୍ୟଙ୍କୁ ଏକ ଦୃଷ୍ଟିରେ ଚାହିଁ ରହିଲା । ଏହାର ଫଳ ଏତିକି ହେଲା ଯେ ପ୍ରଖର ସୂର୍ଯ୍ୟକିରଣ ଦ୍ୱାରା ତାର ଦୃଷ୍ଟିଶକ୍ତି ଲୋପପାଇଗଲା ଓ ସେ ପୂରା ଅନ୍ଧ ହୋଇଗଲା ।

"ସେ ବିଚାରିଲା—ସୂର୍ଯ୍ୟଙ୍କର ଆଲୋକ ଜଳ ପରି ତରଳ ପଦାର୍ଥ ନୁହେଁ । ଯଦି ତାହା ହୋଇଥାଆନ୍ତା, ତେବେ ଏହାକୁ ଏକ ପାତ୍ରରୁ ଅନ୍ୟ ପାତ୍ରକୁ ଢାଳିହେଉଥାନ୍ତା ଓ ବାୟୁଦ୍ୱାରା ଏଥିରେ ତରଙ୍ଗର ସୃଷ୍ଟି ହେଉ-ଥାନ୍ତା । ଏହା ଅଗ୍ନି ମଧ୍ୟ ନୁହେଁ, କାରଣ ତାହା ହୋଇଥିଲେ ଏହାକୁ ଜଳ ଦ୍ୱାରା ଲିଭାଇ ହେଉଥାନ୍ତା । ସୂର୍ଯ୍ୟାଲୋକ ସୂକ୍ଷ୍ମ ପଦାର୍ଥ ନୁହେଁ, କାରଣ ସୂକ୍ଷ୍ମ ପଦାର୍ଥକୁ କେହି ଚକ୍ଷୁ ସାହାଯ୍ୟରେ ଦେଖିପାରେ ନାହିଁ, କିନ୍ତୁ ସୂର୍ଯ୍ୟାଲୋକ ଦେଖିହୁଏ । ଏହା ସ୍ଥୂଳ ପଦାର୍ଥ ମଧ୍ୟ ହୋଇନପାରେ; କାରଣ ଏହାକୁ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ନିଆଯାଇ ପାରେ ନାହିଁ । ଅତଏବ ସୂର୍ଯ୍ୟଲୋକ ଜଳ ନୁହେଁ କି ଅଗ୍ନି ନୁହେଁ, ସୂକ୍ଷ୍ମ ପଦାର୍ଥ ନୁହେଁ କି ସ୍ଥୂଳ ପଦାର୍ଥ ନୁହେଁ । କେଣୁ ଏହାର ଅସ୍ତିତ୍ୱ ନାହିଁ ।

"ସୂର୍ଯ୍ୟଙ୍କୁ ଚାହିଁ ଚାହିଁ, ଏହିପରି ଯୁକ୍ତି କରି କରି ଲୋକଟି ଦୃଷ୍ଟିଶକ୍ତି ସଙ୍ଗେ ତାର ବିଚାରଶକ୍ତି ମଧ୍ୟ ହରାଇଲା । ଅନ୍ଧ ହୋଇଯିବା ପରେ ତା ର ଦୃଢ଼ ବିଶ୍ୱାସ ଜନ୍ମିଲା ଯେ ସୂର୍ଯ୍ୟ ନାହାନ୍ତି ।

"ଏହି ଅନ୍ଧ ସହିତ ତାର ଚାକରଟି ଆସିଥିଲା । ସେ ତାର ପ୍ରଭୁଙ୍କୁ ଗଛ ଛାଇରେ ବସାଇ ତାଙ୍କୁ ଗୋଟିଏ ନଡ଼ିଆ ଗୋଟାଇ ଦେଲା । ସେ ନଡ଼ିଆର

ବଜାରରେ କେଣିଏ ଦନ୍ତୁରି ବଳ, ତାକୁ ସଡ଼େଇରେ ପୂରାଇ, ସେଥିରେ ନଡ଼ିଆରସ ଚପୁଡ଼ି ଦେଲ । ତାର ଉଦ୍ଦେଶ୍ୟ ଥିଲ ଯେ ରାତିରେ ତାକୁ ଜାଳି ସେ ଆଲୁଅ ପାଇପାରିବ ।

"ଗ୍ଭକରଟି ଏହିପରି ରାତିପାଇଁ ଆଲ୍ଅର ବ୍ୟବସ୍ଥା କରୁଥିବାବେଳେ ଅନ୍ଧ ଦାର୍ଶନିକ ସ ପଚାରି କହିଲ—'ମୁଁ କହୁଛୁ, ସୂର୍ଯ୍ୟ ନାହାନ୍ତି । ମୋ କଥା କଅଣ ଠିକ୍ ନୁହେଁ ? ଦେଖ, ଗ୍ଭରିଆଡ଼େ କି ଘୋର ଅନ୍ଧକାର ! ତେବେ ବି ଲୋକେ କହୁଛନ୍ତି—ସୂର୍ଯ୍ୟ ଅଛନ୍ତି । ଯଦି ସୂର୍ଯ୍ୟ ଥାଏ, ସେ କଅଣ ?'

"ଗ୍ଭକର ଉତ୍ତର କଲ—'ସୂର୍ଯ୍ୟ କଅଣ ମୁଁ ଜାଣେନାହିଁ; ଜାଣିବା ମଧ୍ୟ ମୋର କାମ ନୁହେଁ । ମାତ୍ର ଆଲୋକ କଅଣ ମୁଁ ଜାଣେ । ରାତିପାଇଁ ମୁଁ ଏ ଆଲୁଅଟି ତିଆରି କରି ରଖିଛୁ । ତାର ସାହାଯ୍ୟରେ ମୁଁ ଆପଣଙ୍କର କାମ କରିପାରିବ; ଦରକାର ପଡ଼ିଲେ ଘରୁ ଯେ କୌଣସି ଜିନିଷ ଖୋଜି ଆଣି-ପାରିବ ।'

"ତାହାପରେ ସେ ସଡ଼େଇଟିକୁ ଦେଖାଇ କହିଲ—ଏଇଟି ହେଉଛି ମୋର ସୂର୍ଯ୍ୟ ।

"ଗ୍ଭକରର ପାଖରେ ଜଣେ ଖଞ୍ଜ ଲୋକ ବସିଥିଲା । ସେ ଗ୍ଭକରର କଥା ଶୁଣି ହସି ହସି ଅନ୍ଧକୁ କହିଲ, 'ନିଶ୍ଚୟ ତୁମେ ଜନ୍ମରୁ ଅନ୍ଧ ହୋଇଥିବ । ତା ନୋହିଥିଲେ, ସୂର୍ଯ୍ୟ କଅଣ ଜାଣିନଥାନ୍ତ ? ମୁଁ କହୁଛୁ, ଶୁଣ । ସୂର୍ଯ୍ୟ ଗୋଟିଏ ପ୍ରକାଣ୍ଡ ଅଗ୍ନିପିଣ୍ଡ । ଏହା ପ୍ରତିଦିନ ସକାଳେ ସମୁଦ୍ରରୁ ବାହାରି ସନ୍ଧ୍ୟା ବେଳକୁ ଏହି ଦ୍ୱୀପରେ ଥିବା ଏକ ପର୍ବତ ପଛରେ ବୁଡ଼ିଯାଏ । ଆମେ ସମସ୍ତେ ଏହା ଦେଖିଆସୁଛୁ । ତୁମର ଚକ୍ଷୁ ଥିଲେ ତୁମେ ମଧ୍ୟ ଦେଖି ପାରି-ଥାନ୍ତ ।'

"ଜଣେ ଧୀବର ସେମାନଙ୍କ ପାଖରେ ବସି ଏହି କଥୋପକଥନ ଶୁଣୁଥିଲା । ସେ ଖଞ୍ଜକୁ ଲକ୍ଷ୍ୟ କରି କହିଲ, 'ମୁଁ ସ୍ପଷ୍ଟ ବୁଝି ପାରୁଛି ଯେ ତୁମେ ଏହି ଦ୍ୱୀପ ଛଡ଼ା ଅନ୍ୟ କୌଣସି ସ୍ଥାନ ଦେଖିନାହିଁ । ତୁମେ ଯଦି ଖଞ୍ଜ ହୋଇନଥାନ୍ତ ଓ ମୋ ଭଳି ଅନ୍ୟାନ୍ୟ ଦେଶ ଦେଖିଥାନ୍ତ, ତାହାହେଲେ ଜାଣିପାରିଥାନ୍ତ ଯେ ସୂର୍ଯ୍ୟ ଆମ ଦ୍ୱୀପରେ ଥିବା ପର୍ବତ ପଛରେ ବୁଡ଼ି ଯାଆନ୍ତି ନାହିଁ; କିନ୍ତୁ ସେ ପ୍ରତିଦିନ ସକାଳେ ଯେପରି ସମୁଦ୍ରରୁ ଉଇଁଥାନ୍ତି,

ସେହିପରି ପ୍ରତିଦିନ ସନ୍ଧ୍ୟାରେ ସମୁଦ୍ରରେ ବୁଡିଯାଆନ୍ତି । ମୋ କଥା ଅକ୍ଷରେ ଅକ୍ଷରେ ସତ୍ୟ; ପ୍ରତିଦିନ ମୁଁ ଏହା ସ୍ୱଚକ୍ଷୁରେ ଦେଖିଆସୁଛି ।'

ଆମର ଏହି ଦଳରେ ଜଣେ ଭାରତୀୟ ଥିଲେ । ଧୀବର ଆଉ କିଛି କହିବା ପୂର୍ବରୁ ସେ ତାଙ୍କୁ ବାଧା ଦେଇ କହିଲେ, "କୌଣସି ବିବେକୀ ଲୋକ ଏପରି କହିବା ଆଶ୍ଚର୍ଯ୍ୟର ବିଷୟ । ଗୋଟିଏ ଅଗ୍ନିପିଣ୍ଡ ସମୁଦ୍ରପାଣିରେ ବୁଡ଼ି ଲିଭି ଯାଉନାହିଁ କିପରି ? ସୂର୍ଯ୍ୟ ଆଦୌ ଅଗ୍ନିପିଣ୍ଡ ନୁହନ୍ତି । ସେ ହେଉଛନ୍ତି ଏକ ଦେବତା । ସେ ତାଙ୍କ ରଥ ଉପରେ ବସି ସୁନାର ମେରୁପର୍ବତ ଚାରିପାଖେ ବୁଲୁଥାନ୍ତି । ବେଳେ ବେଳେ ରାହୁ ଓ କେତୁ ବୋଲି ଦୁଇଟି ଦୈତ୍ୟ ତାଙ୍କୁ ଆକ୍ରମଣକରି ଗିଳି ଦିଅନ୍ତି । ସେତେବେଳେ ପୃଥିବୀ ଅନ୍ଧକାରମୟ ହୋଇ-ଯାଏ । ସୂର୍ଯ୍ୟଙ୍କୁ ଛାଡ଼ିଦେବାପାଇଁ ଆମର ପୁରୋହିତମାନେ ରାହୁ ଓ କେତୁଙ୍କୁ ପ୍ରାର୍ଥନା କରନ୍ତି । ସେମାନେ ସୂର୍ଯ୍ୟଙ୍କୁ ଛାଡ଼ିଦିଅନ୍ତି । କେବଳ ତୁମପରି ଭଳି ମୂର୍ଖଲୋକେ ବିଶ୍ୱାସ କରନ୍ତି ଯେ ସୂର୍ଯ୍ୟ ଏହି ଦ୍ୱୀପରେ ଆଲୁଅ ଦେଉଅଛନ୍ତି; ଆଉ କେଉଁଠାରେ ଦେଉନାହାନ୍ତି ।'

"ସେଠାରେ ଇଜିପ୍ଟର ଜଣେ ଲୋକ ଥିଲେ । ସେ ଗୋଟିଏ ଜାହାଜର ମାଲିକ । ସେ କହିଲେ, 'ତୁମେ ଯାହା କହିଲ ତାହା ମଧ୍ୟ ଠିକ୍ ନୁହେଁ । ସୂର୍ଯ୍ୟ କୌଣସି ଦେବତା ନୁହନ୍ତି, କି କେବଳ ଭାରତବର୍ଷର ସୁନାପର୍ବତର ଚାରିପଟେ ବୁଲୁନଥାନ୍ତି । ମୁଁ ଜାହାଜରେ ବସି କୃଷ୍ଣସାଗର ଓ ଆରବ-ସାଗର ଉପକୂଳରେ ବୁଲିଛି । ମାଡାଗାସ୍କର ଓ ଫିଲିପାଇନ ଦ୍ୱୀପକୁ ଯାଇ-ଅଛି । ସେ ସବୁ ଅଞ୍ଚଳରେ ସୂର୍ଯ୍ୟଙ୍କୁ ଦେଖିଅଛି । ସୂର୍ଯ୍ୟ କେବଳ ଯେ ଭାରତବର୍ଷକୁ ଆଲୁଅ ଦିଅନ୍ତି, ତାହା ନୁହେଁ । ସମଗ୍ର ପୃଥିବୀ ତାଙ୍କର ଆଲୁଅ ପାଇଥାଏ । ସେ କୌଣସି ପର୍ବତର ଚାରିପାଖେ ବୁଲୁନଥାନ୍ତି । ପ୍ରକୃତରେ ସୂର୍ଯ୍ୟ ଜାପାନ ଦ୍ୱୀପପୁଞ୍ଜର ଅପର ପାର୍ଶ୍ୱରୁ ପୂର୍ବଦିଗରେ ଉଦୟ ହୋଇ ବହୁଦୂରରେ ପଶ୍ଚିମ ଦିଗରେ ଥିବା ଇଂଲଣ୍ଡ ଦ୍ୱୀପର ପରପାର୍ଶ୍ୱରେ ଅସ୍ତ ହୁଅନ୍ତି । ସେଥିପାଇଁ ଜାପାନର ଲୋକେ ନିଜ ଦେଶର ନାମ ଦେଇ ଅଛନ୍ତି 'ନିପନ' ଅର୍ଥାତ୍ ସୂର୍ଯ୍ୟଙ୍କର ଜନ୍ମ ଦେଶ । ମୁଁ ଅନେକ ଦେଶ ଦେଖିଛି, ମୋର ପିତାମହ ସମୁଦ୍ରପଥରେ ପୃଥିବୀର ଅପର ପ୍ରାନ୍ତ ପର୍ଯ୍ୟନ୍ତ ଯାଇଥିଲେ । ତାଙ୍କଠାରୁ ମୁଁ ଅନେକ କଥା ଶୁଣିଛି; ତେଣୁ ଏସବୁ ଜାଣିପାରୁଛି ।'

"ସେ ଆହୁରି କେତେ କଥା କହୁଥାଆନ୍ତି; କିନ୍ତୁ ଆମ ଜାହାଜର ଜଣେ ଇଂରେଜ ନାବିକ କହିଲେ, 'ଇଂଲଣ୍ଡର ଲୋକେ ସୂର୍ଯ୍ୟର ଗତିବିଧି ବିଷୟରେ ଯେତେ ଜାଣନ୍ତି, ଅନ୍ୟ କୌଣସି ଦେଶର ଲୋକେ ସେତେ ଜାଣନ୍ତି ନାହିଁ । ଇଂଲଣ୍ଡର ପ୍ରତ୍ୟେକ ଲୋକ ଜାଣେ ଯେ ସୂର୍ଯ୍ୟ କୌଣସିଠାରେ ଉଦିତ ହୁଏ ନାହିଁ କିମ୍ବା କୌଣସିଠାରେ ଅସ୍ତ ହୁଏ ନାହିଁ । ସୂର୍ଯ୍ୟ ସର୍ବଦା ପୃଥିବୀର ଚତୁର୍ଦ୍ଦିଗରେ ପରିଭ୍ରମଣ କରୁଅଛୁ । ଏଥିରେ ଲବମାତ୍ର ସନ୍ଦେହ ନାହିଁ । ଆମ୍ଭେମାନେ ପୃଥିବୀର ଚାରିପାଖେ ଭ୍ରମଣ କରିଅଛୁ; କିନ୍ତୁ କେବେ କୌଣସିଠାରେ ସୂର୍ଯ୍ୟ ସହିତ ଆମର ଧକ୍କା ଲାଗିନାହିଁ । ଆମେ ଯେଉଁଠାକୁ ଯାଉଁ, ସେଠାରେ ଦେଖୁଁ ସୂର୍ଯ୍ୟ ଏହିପରି ସକାଳେ ଉଇଁ ସନ୍ଧ୍ୟାରେ ଅସ୍ତ ହୋଇଯାନ୍ତି ।'"

"ଏହା କହି ଇଂରେଜ ନାବିକ ଖଣ୍ଡିଏ ବାଡ଼ିର ଅଗରେ ଭୂଇଁ ଉପରେ କେତୋଟି ବୃତ୍ତ ଟାଣି ସୂର୍ଯ୍ୟ ଆକାଶରେ ରହି କିପରି ପୃଥିବୀର ଚାରିପାଖେ ବୁଲୁଛି, ତାହା ବୁଝାଇବାକୁ ଚେଷ୍ଟା କଲେ ଏବଂ ଜାହାଜର ଚାଳକଙ୍କୁ ଲକ୍ଷ୍ୟ କରି କହିଲେ, 'ଏ ମହାଶୟ ଏସବୁ ବିଷୟ ମୋ ଅପେକ୍ଷା ଆହୁରି ଭଲକରି ଜାଣନ୍ତି । ସେ ଠିକ୍ କରି ସବୁ ବୁଝାଇଦେଇପାରିବେ ।'

"ଜାହାଜ ଚାଳକ ଜଣେ ଖୁବ୍ ବୁଦ୍ଧିମାନ ଲୋକ । ସେ ମନଦେଇ ସମସ୍ତଙ୍କ କଥା ଶୁଣୁଥିଲେ । ସମସ୍ତେ ତାଙ୍କ ଆଡ଼କୁ ଚାହିଁ ଥିବାର ଦେଖି ସେ କହିଲେ, "ଆପଣମାନେ ସମସ୍ତେ ପରସ୍ପରକୁ ଭ୍ରମରେ ପକାଉଛନ୍ତି ଓ ନିଜେ ଭ୍ରମରେ ପଡ଼ୁଛନ୍ତି । ସୂର୍ଯ୍ୟ ପୃଥିବୀର ଚାରିପାଖରେ ବୁଲୁନାହିଁ, କିନ୍ତୁ ପୃଥିବୀ ସୂର୍ଯ୍ୟର ଚାରିପାଖେ ବୁଲୁଛି । ତାହା ସଙ୍ଗେ ସଙ୍ଗେ ପୃଥିବୀ ନିଜର ମେରୁଦଣ୍ଡ ଚାରିପାଖେ ମଧ୍ୟ ଘୁରୁଛି । ପ୍ରତି ଚବିଶ ଘଣ୍ଟାରେ ପୃଥିବୀ ନିଜ ଚାରିପାଖେ ଥରେ ବୁଲୁଥିବାରୁ କେବଳ ଜାପାନ, ଫିଲିପାଇନ ବା ବର୍ତ୍ତମାନ ଆମେ ଯେଉଁ ସୁମାତ୍ରାରେ ଅଛୁ, ସେ ସେ ସୂର୍ଯ୍ୟ ଆଡ଼କୁ ରହେ ତାହା ନୁହେଁ : ଆଫ୍ରିକା, ଇଉରୋପ, ଆମେରିକା ପ୍ରଭୃତି ପୃଥିବୀର ପ୍ରତ୍ୟେକ ଦେଶ ସୂର୍ଯ୍ୟ ଆଡ଼କୁ ରହେ । ସୂର୍ଯ୍ୟ କୌଣସି ଗୋଟିଏ ପର୍ବତ ବା ଦ୍ୱୀପ ବା ସମୁଦ୍ର ଉପରେ ଆଲୁଅ ଦିଏ ନାହିଁ । କେବଳ ଆମର ଏଇ ପୃଥିବୀଟି ଯେ ସୂର୍ଯ୍ୟର ଆଲୁଅ ପାଏ ତାହା ମଧ୍ୟ ନୁହେଁ, ପୃଥିବୀ ପ

ଅନ୍ୟାନ୍ୟ ଗ୍ରହମାନେ ମଧ୍ୟ ସୂର୍ଯ୍ୟର ଆଲୁଅ ପାଇଥାନ୍ତି । ପାଦତଳର ପୃଥିବୀକୁ ନଗ୍ନହିଁ ଦୃଷ୍ଟିରେ ଆକାଶ ଆଡ଼କୁ ଚାହିଁଲେ ଏହା ସ୍ପଷ୍ଟ ବୁଝାଯିବ । ସେଥିରୁ ଜାଣିପାରିବ ଯେ ସୂର୍ଯ୍ୟ କେବଳ ତୁମପାଇଁ ବା ତୁମର ଦେଶପାଇଁ ଆଲୁଅ ଦିଏ ନାହିଁ ।"

"ଚୀନଦେଶୀୟ ଭଦ୍ରବ୍ୟକ୍ତି ଏହି ଗଳ୍ପଟି କହିସାରି ବୁଝାଇବାକୁ ଲାଗିଲେ—ସୂର୍ଯ୍ୟଙ୍କ ବିଷୟରେ ଯେପରି, ଧର୍ମ ବିଷୟରେ ମଧ୍ୟ ଠିକ୍ ସେହିପରି । ଅଭିମାନ ହେତୁରୁ ଲୋକେ ଭ୍ରମରେ ପଡ଼ି ପରସ୍ପର ମଧ୍ୟରେ ବିବାଦ କରନ୍ତି । ସୂର୍ଯ୍ୟଙ୍କ ବିଷୟରେ ଯାହା ଶୁଣିଲ, ଈଶ୍ୱରଙ୍କ ବିଷୟରେ ମଧ୍ୟ ଠିକ୍ ସେହି କଥା । ପ୍ରତ୍ୟେକ ଲୋକ ନିଜପାଇଁ ଗୋଟିଏ ସ୍ୱତନ୍ତ୍ର ଈଶ୍ୱର ଚାହେଁ ; ତା ନହେଲେ ଅନ୍ତତଃ ନିଜ ଦେଶ ପାଇଁ ସେ ଗୋଟିଏ ଈଶ୍ୱର ଚାହେଁ । ପ୍ରତ୍ୟେକ ଜାତି ଈଶ୍ୱରଙ୍କୁ ନିଜର ମନ୍ଦିର ଭିତରେ ବନ୍ଦୀ କରି ରଖିବାକୁ ଇଚ୍ଛାକରେ । କିନ୍ତୁ ସେ ଈଶ୍ୱର ଏତେ ବିରାଟ ଯେ ସମଗ୍ର ବିଶ୍ୱ ସୁଦ୍ଧା ତାଙ୍କୁ ଧରି ରଖିନପାରେ ।

"ସମଗ୍ର ମାନବ ଜାତିକୁ ଏକ ଧର୍ମ ଓ ଏକ ବିଶ୍ୱାସରେ ବାନ୍ଧି ରଖିବା ପାଇଁ ଈଶ୍ୱର ଯେଉଁ ମନ୍ଦିର ସୃଷ୍ଟି କରିଅଛନ୍ତି, ତାହା ସଙ୍ଗେ ମନୁଷ୍ୟର କେଉଁ ମନ୍ଦିର ତୁଳନୀୟ ହୋଇପାରେ ?

"ଈଶ୍ୱର ସୃଷ୍ଟ ସଂସାର ହେଉଛି ସେହି ମନ୍ଦିର ଓ ମନୁଷ୍ୟର ମନ୍ଦିର ତାହାରି ଆଦର୍ଶରେ ନିର୍ମିତ । ପ୍ରତ୍ୟେକ ମନ୍ଦିରରେ ସ୍ନାନ, ଜଳାଧାର, ଦୀପ, ଛବି, ମୂର୍ତ୍ତି ପ୍ରଭୃତି ଥାଏ । ଅଧିକନ୍ତୁ ମଧ୍ୟ ଧର୍ମଶାସ୍ତ୍ର, ବେଦୀ, ଭୋଗ ଓ ପୁରୋହିତମାନେ ଥାଆନ୍ତି । କିନ୍ତୁ ମନୁଷ୍ୟର କେଉଁ ମନ୍ଦିରରେ ବିଶାଳ ସମୁଦ୍ରଭଳି ଜଳାଧାର ଅଛି ? ଆକାଶ ଭଳି ବିଶାଳ ଗମ୍ବୁଜ ଅଛି ? ସୂର୍ଯ୍ୟ, ଚନ୍ଦ୍ର, ତାରକାପରି ଆଲୋକମାଳା ଅଛି ? ଜୀବନ୍ତ, ସ୍ନେହମୟ, ସହାନୁଭୂତିପୂର୍ଣ୍ଣ ମାନବପରି ଦେବମୂର୍ତ୍ତି କେଉଁ ମନ୍ଦିରରେ ଅଛି ? ମାନବ-ଜାତିର ହିତ ପାଇଁ ଈଶ୍ୱରଙ୍କର ଆଶୀର୍ବାଦ ସବୁଠି ବିତରିତ ହେଉଅଛି । ଏହା ଯେତେ ସହଜରେ ବୁଝିହୁଏ, ଈଶ୍ୱରଙ୍କ କୃପାବିଷୟକ କେଉଁ ଧର୍ମଶାସ୍ତ୍ର ବା ପୁରାଣ ସେତେ ସହଜରେ ବୁଝି ହେବ କି ? ଈଶ୍ୱର ପ୍ରତ୍ୟେକ ଲୋକର ହୃଦୟରେ ସ୍ପଷ୍ଟାକ୍ଷରରେ ଯେଉଁ ଧର୍ମତତ୍ତ୍ୱ ଲେଖିଦେଇଅଛନ୍ତି, ସେପରି

ତତ୍ତ୍ୱପୂର୍ଣ୍ଣ ଧର୍ମଶାସ୍ତ୍ର ଆଉ କେଉଁଠାରେ ଅଛି ? ପ୍ରେମପୂର୍ଣ୍ଣ ହୃଦୟରେ ନରନାରୀ ପରସ୍ପର ପାଇଁ ଯେଉଁ ଆତ୍ମତ୍ୟାଗର ଦୃଷ୍ଟାନ୍ତ ଦେଖାଇଥାନ୍ତି, ତାହା ସଙ୍ଗେ କେଉଁ ଯଜ୍ଞର ତୁଳନା ହୋଇପାରେ କି ? ସାଧୁ ଲୋକର ହୃଦୟରେ ଅବସ୍ଥାନ କରି ଈଶ୍ୱର ତ୍ୟାଗର ପୂଜା ଗ୍ରହଣ କରିଥାନ୍ତି । ସେ ହୃଦୟ ସହିତ ମାନବ ନିର୍ମିତ କୌଣସି ମନ୍ଦିର ତୁଳନୀୟ ହୋଇ ନପାରେ ।

"ମନୁଷ୍ୟ ଈଶ୍ୱରଙ୍କ ସମ୍ବନ୍ଧରେ ଯେତିକି ଉଚ୍ଚ ଧାରଣା ପୋଷଣ କରିବ, ତାଙ୍କୁ ସେତିକି ଜାଣିପାରିବ । ଯେ ଈଶ୍ୱରଙ୍କୁ ଯେତେ ବେଶୀ ଜାଣିବ, ସେ ତାଙ୍କର ଉତ୍ତମତା, ଦୟା ଓ ମାନବ ପ୍ରେମର ଅନୁକରଣ କରି ସେତିକି ତାଙ୍କର ନିକଟବର୍ତ୍ତୀ ହେବ ।

"ଅତଏବ ସୂର୍ଯ୍ୟଙ୍କର ଆଲୋକ ସମଗ୍ର ପୃଥିବୀକୁ ଆଲୋକିତ କରୁଥିବାର ଯେଉଁ ଲୋକ ଦେଖୁଛି, ସେ ନିଜ ପିତୁଳାରେ ସେହି ଆଲୋକର ଏକ ସୂକ୍ଷ୍ମ କଣା ପଡ଼ୁଅଛି ବୋଲି ବିଶ୍ୱାସ କରୁଥିବା ଅନ୍ଧବିଶ୍ୱାସୀକୁ ଦୋଷ ଦେବାର ବା ଘୃଣା କରିବାର କୌଣସି କାରଣ ନାହିଁ । ଅନ୍ଧ ହୋଇଥିବାରୁ ସୂର୍ଯ୍ୟଙ୍କୁ ଆଦୌ ଦେଖି ପାରୁନଥିବା ଲୋକ ପରି ଈଶ୍ୱର ଅବିଶ୍ୱାସୀ ନାସ୍ତିକକୁ ମଧ୍ୟ ଘୃଣା କରିବା ଉଚିତ ନୁହେଁ ।

କନଫୁସିୟସଙ୍କ ମତାବଲମ୍ବୀ ଚୀନଦେଶୀୟ ଭଦ୍ରବ୍ୟକ୍ତି ଏହିପରି କହିଗଲେ । ହୋଟେଲରେ ବସିଥିବା ଲୋକେ ସମସ୍ତେ ନୀରବ ହୋଇ ରହିଲେ । କାହାର ଧର୍ମ ବଡ଼ ସେ ବିଷୟରେ ଆଉ ବିବାଦ ରହିଲା ନାହିଁ ।

# ସମସ୍ୟା

ଫ୍ରାନ୍ସ ଓ ଇଟାଲି ଏହି ଦୁଇ ଦେଶର ସୀମା ନିକଟରେ ଭୂମଧ୍ୟ-ସାଗରକୁ ଲାଗି ଗୋଟିଏ ଅତି କ୍ଷୁଦ୍ର ରାଜ୍ୟ ଅଛି । ଏହି ରାଜ୍ୟର ନାମ ମନାକୋ । ରାଜ୍ୟଟିର ଲୋକସଂଖ୍ୟା ସାତ ହଜାର ମାତ୍ର । କେତେକ ଦେଶରେ ଅନେକ ସହରର ଲୋକସଂଖ୍ୟା ନିଶ୍ଚୟ ଏହାଠାରୁ ଯଥେଷ୍ଟ ବେଶୀ । ରାଜ୍ୟର କ୍ଷେତ୍ରଫଳ ଏତେ କମ୍ ଯେ ଲୋକମାନଙ୍କ ଭିତରେ ଏହାକୁ ସମାନ ଭାବରେ ବାଣ୍ଟି କରିଦେଲେ ଜଣକେ ଏକ ଏକର ଭୂମି ସୁଦ୍ଧା ପଡ଼ିବ ନାହିଁ । ରାଜ୍ୟଟି କ୍ଷୁଦ୍ର ହେଲେହେଁ ସେଥିରେ ଜଣେ ରାଜା ଥାଆନ୍ତି; ତାଙ୍କର ନଅର ଥାଏ; ରାଜସଭା ଥାଏ; ଏପରିକି ମନ୍ତ୍ରୀମଣ୍ଡଳ, ବିଚାରପତି, ସେନାପତି ଓ ସୈନ୍ୟଦଳ ମଧ୍ୟ ଥାଆନ୍ତି ।

ରାଜାଙ୍କ ସେନାଦଳର ସୈନ୍ୟସଂଖ୍ୟା ଷାଠିଏ ଜଣ ମାତ୍ର । ଅନ୍ୟାନ୍ୟ ରାଜ୍ୟପରି ଏ ରାଜ୍ୟର ପ୍ରଜାମାନେ କର ଦେଇଥାନ୍ତି । ତମାଖୁ, ମଦ୍ୟ ପ୍ରଭୃତି ଦ୍ରବ୍ୟ ଉପରେ କର ଧାର୍ଯ୍ୟ ହୁଏ । ଅନ୍ୟାନ୍ୟ ଦେଶ ପରି ଏ ଦେଶର ଲୋକେ ଅବଶ୍ୟ ତମାଖୁ ଓ ମଦ୍ୟ ପ୍ରଭୃତି ବ୍ୟବହାର କରନ୍ତି, କିନ୍ତୁ ସେପରି ଲୋକଙ୍କ ସଂଖ୍ୟା ଏତେ ଉଣା ଯେ ସେଥିରୁ ହେଉଥିବା ଅାୟରେ ରାଜା ସୈନ୍ୟ ଓ କର୍ମଚାରୀମାନଙ୍କୁ ବେତନ ଦେଇ ନିଜେ ଚଳିପାରୁ ନ ଥାନ୍ତେ । ରାଜାଙ୍କର ଆୟର ଅନ୍ୟ ଗୋଟିଏ ପ୍ରଧାନ ପନ୍ଥା ଥିଲା । ରାଜ୍ୟରେ ଜୁଆଖେଳର କେତୋଟି ଅଡ୍ଡା ଥିଲା । ଏହି ଅଡ୍ଡାର ମାଲିକମାନେ ଖେଳାଳି ମାନଙ୍କଠାରୁ କିଛି ଭଡ଼ା ଆଦାୟ କରୁଥିଲେ । କିଏ ହାରିଲେ ବା କିଏ ଜିତିଲେ ସେଥିରେ ଅଡ୍ଡା ମାଲିକର କିଛି ଯାଏ ଆସେ ନ ଥିଲା— ତାର ଭଡ଼ା ପାଇବା ନିଶ୍ଚିତ । ସେହି ଆୟରୁ ତାକୁ ରାଜକର ଦେବାକୁ ପଡ଼ୁଥିଲା । ଏହି ବ୍ୟବସାୟ ଏପରି ଲାଭଜନକ ହେବାର କାରଣ ଏହିଯେ, ଇଉରୋପର ଅନ୍ୟ କୌଣସି ରାଜ୍ୟରେ ଜୁଆଖେଳର ଅଡ୍ଡା ନ ଥିଲା । ଅନ୍ୟ ଦେଶମାନଙ୍କରେ ଜୁଆ-ଖେଳ ଅାଇନ ଅନୁସାରେ ନିଷେଧ ଥିଲା । ପୂର୍ବେ ଜର୍ମାନୀର ରାଜା ଏପରି

ଜୁଆଖେଳ ପାଇଁ ଅନୁମତି ଦେଉଥିଲେ । କିନ୍ତୁ ଦେଖାଗଲା ଯେ ଜଣେ ଜଣେ ଲୋକ ଏହି ଖେଳରେ ସର୍ବସ୍ୱ ହରାଇ ନୈରାଶ୍ୟରେ ଆତ୍ମହତ୍ୟା ନପେଧ କରନ୍ତି । ତେଣୁ ଲୋକେ ଏହାର ବିରୋଧ କରିବାରୁ ରାଜା ଜୁଆ ଖେଳକୁ କରିବାପାଇଁ ବାଧ୍ୟ ହେଲେ ।

କିନ୍ତୁ ମନାକୋ ରାଜ୍ୟରେ ଜୁଆଖେଳ ବିଷୟରେ କୌଣସି ପ୍ରତିବନ୍ଧକ ନଥିଲା । ସମଗ୍ର ଇଉରୋପର ଜୁଆଖେଳ ଏକପ୍ରକାରେ ମନାକୋରାଜାଙ୍କର ଏକଚାଟିଆ ଅଧିକାର ଥିଲା କହିଲେ ଚଳେ ।

ଯେ ଜୁଆ ଖେଳିବାକୁ ଇଚ୍ଛା କରୁଥିଲା, ସେ ସ୍ୱଚ୍ଛନ୍ଦରେ ମନାକୋ ରାଜ୍ୟକୁ ଯାଇ ନିଜର ଅଭିଳାଷ ମେଣ୍ଟାଇ ପାରୁଥିଲା । ଖେଳରେ ତାର ଲାଭ କି କ୍ଷତି ହେଉ, ସେଥିରେ ରାଜାଙ୍କର କିଛି ଯାଏ ଆସେ ନାହିଁ; ତାଙ୍କର ଲାଭ ସୁନିଶ୍ଚିତ । ପ୍ରବାଦ ଅଛି, "ସତ୍ ଉପାୟରେ କେହି ମର୍ମର ପ୍ରାସାଦ ତୋଳି ନପାରେ ।" ମନାକୋର ରାଜା ଜାଣନ୍ତି ଯେ ଜୁଆ ଖେଳକୁ ପ୍ରଶ୍ରୟ ଦେବା ନୀତିବିଗର୍ହିତ । କିନ୍ତୁ ତାଙ୍କୁ ରାଜ୍ୟର ବ୍ୟୟ ବହନ କରିବାକୁ ହେବ । କେବଳ ମଦ୍ୟ ଓ ତମାଖୁ ଉପରେ କର ବସାଇବା ଦ୍ୱାରା ତାଙ୍କ ପକ୍ଷରେ ଚଳିବା ଅସମ୍ଭବ । ତେଣୁ ସେ ଜୁଆଖେଳକୁ ଆୟର ଗୋଟିଏ ପନ୍ଥାରୂପେ ଗ୍ରହଣ କରିନେଇଥିଲେ । ଜୀବନରକ୍ଷା ନିକଟରେ ନୀତି ଅନୀତିର ପ୍ରଶ୍ନ ଅବାନ୍ତର ହୋଇପଡ଼େ ।

ଏହିପରି କର ଆଦାୟ କରି ରାଜା ରାଜ୍ୟ ଚଳାଉଥାନ୍ତି । ରାଜସଭା ବସେ; ରାଜୋଚିତ ଉତ୍ସବ ମଧ୍ୟ ଆଡ଼ମ୍ବର ସହକାରେ ହୁଏ । ରାଜ୍ୟଟି ଗ୍ରୋଟ ହେଲେହେଁ ରାଜା ସିଂହାସନରେ ବସନ୍ତି; ତାଙ୍କର ପାତ୍ର ମନ୍ତ୍ରୀ, କର୍ମଚାରୀମାନେ ନିଜ ନିଜର ସମ୍ମାନ ରକ୍ଷା କରି ଚଳନ୍ତି । ରାଜା ଗୁଣୀକୁ ପୁରସ୍କାର ଦଅନ୍ତି ଦୋଷୀକୁ ଦଣ୍ଡ ଦଅନ୍ତି; କେତେବେଳେ ଅବା ଅପରାଧୀକୁ କ୍ଷମାଦଅନ୍ତି; କର୍ମଚାରୀମାନଙ୍କ କାର୍ଯ୍ୟର ପୁନର୍ବିଚାର କରନ୍ତି; ରାଜସଭାର କାର୍ଯ୍ୟାବଳୀ, ଆଇନ, ବିଚାର ପ୍ରଭୃତି ବିଭିନ୍ନ ବିଭାଗର କାର୍ଯ୍ୟ ପର୍ଯ୍ୟବେକ୍ଷଣ କରନ୍ତି । ଅନ୍ୟ ରାଜାମାନେ ମଧ୍ୟ ଏହିସବୁ କାର୍ଯ୍ୟ କରିଥାନ୍ତି । କେବଳ ରାଜ୍ୟଟି କ୍ଷୁଦ୍ର ହୋଇଥିବାରୁ ମନାକୋର ରାଜାଙ୍କ କାର୍ଯ୍ୟର ପରିସର ସୀମାବଦ୍ଧ ଥିଲା, ଏତିକି ମାତ୍ର ପ୍ରଭେଦ ।

ଏକଦା ଏହି କ୍ଷୁଦ୍ର ରାଜ୍ୟରେ ଗୋଟିଏ ନରହତ୍ୟା ଅପରାଧ ଘଟିଲା । ରାଜ୍ୟର ଲୋକେ ଶାନ୍ତିପ୍ରିୟ ହୋଇଥିବାରୁ ଏଭଳି ଅପରାଧ ଏଥି ପୂର୍ବରୁ କେବେ ଘଟିନଥିଲା । ହତ୍ୟାକାରୀର ଯଥାବିଧି ବିଚାର ଚାଲିଲା । ବିଚାରପତି ବସି ସାକ୍ଷ୍ୟପ୍ରମାଣ ଗ୍ରହଣ କଲେ । ଜୁରିର ସଭ୍ୟମାନେ ବିଚାର-ପତିଙ୍କ ନିକଟରେ ବସି ଆସାମୀ ଓ ସାକ୍ଷୀମାନଙ୍କର ଜମାନବନ୍ଦୀ ଏବଂ ସରକାରୀ ଓକିଲ ଓ ଆସାମୀର ଓକିଲ ମାନଙ୍କର ଉକ୍ତି ପ୍ରତ୍ୟୁକ୍ତି ମନୋଯୋଗ ଦେଇ ଶୁଣିଲେ । ଉପଯୁକ୍ତ ଭାବରେ ନ୍ୟାୟର ମର୍ଯ୍ୟାଦା ରକ୍ଷାକରି ଦେଶର ପ୍ରଚଳିତ ଆଇନ ଅନୁସାରେ ବିଚାର ହେଲା । ଶେଷରେ ଆଦେଶ ଦିଆଗଲା ଯେ ନରହତ୍ୟା ଅପରାଧ ହେତୁ ଆଇନ ଅନୁଯାୟୀ ଆସାମୀର ମସ୍ତକ ଛେଦନ କରାଯିବ । ମୃତ୍ୟୁଦଣ୍ଡର ଆଦେଶ ରାଜାଙ୍କର ଅନୁମୋଦନ ନିମନ୍ତେ ପ୍ରେରିତ ହେଲା ଓ ରାଜା ସେହି ଆଦେଶ କାଏମ ରଖିଲେ ।

କିନ୍ତୁ ଏଥିରେ ଗୋଟିଏ ଅସୁବିଧା ଉପସ୍ଥିତ ହେଲା । ମନାକୋ ରାଜସରକାରଙ୍କର ମୃତ୍ୟୁଦଣ୍ଡ ଦେବାର ଯନ୍ତ୍ର ନଥିଲା କିମ୍ବା ସେଥିପାଇଁ କୌଣସି ଘାତକ ନିଯୁକ୍ତ ନଥିଲେ । ମନ୍ତ୍ରୀମଣ୍ଡଳ ଏହି ସମସ୍ୟାର ବିଚାର କରି ଫ୍ରାନ୍ସ ସରକାରଙ୍କୁ ଖଣ୍ଡିଏ ପତ୍ର ଲେଖିଲେ—

"ଜଣେ ଅପରାଧୀକୁ ମୃତ୍ୟୁଦଣ୍ଡ ଦେବାପାଇଁ ଆପଣଙ୍କ ସରକାର ଆମ ସରକାରଙ୍କୁ ଗୋଟିଏ ଯନ୍ତ୍ର ଓ ଜଣେ ଘାତକ ଯୋଗାଇ ଦେଇ ପାରିବେ କି ? ଯଦି ଦେଇପାରନ୍ତି, ତେବେ ଆମ ସରକାରଙ୍କୁ ସେଥିନିମନ୍ତେ କେତେ ଅର୍ଥ ଦେବାକୁ ହେବ, ଅନୁଗ୍ରହ କରି ଜଣାନ୍ତୁ ।"

ସପ୍ତାହକ ପରେ ପତ୍ରର ଉତ୍ତର ଆସିଲା ଯେ ଫରାସୀ ସରକାର ଷୋହଳ ହଜାର ଫ୍ରାଙ୍କ ପାଇଲେ ଅପରାଧୀର ମସ୍ତକ ଛେଦନ ପାଇଁ ଯନ୍ତ୍ର ଓ ଜଣେ ଘାତକ ଯୋଗାଇ ଦେଇ ପାରିବେ । ଏହି ପ୍ରସ୍ତାବ ରାଜାଙ୍କ ସମକ୍ଷରେ ଉପସ୍ଥାପିତ କରାଗଲା । ରାଜା ଚିନ୍ତା କରିବାକୁ ଲାଗିଲେ—ଷୋହଳ ହଜାର ଫ୍ରାଙ୍କ କିଛି କମ୍ ନୁହେଁ । ଜଣେ ଲୋକକୁ ବଧ କରିବାପାଇଁ ରାଜ୍ୟର ପ୍ରତ୍ୟେକ ଲୋକ ଉପରେ ଦୁଇ ଫ୍ରାଙ୍କରୁ ଅଧିକ କର ବୋଝ ବହିବାକୁ ହେବ । ରାଜସ୍ୱର ଏପରି ଅପବ୍ୟୟ ହେଉଥିବାର ଜାଣିଲେ ରାଜ୍ୟର ଲୋକେ ବିଦ୍ରୋହ କରିବା ଅସମ୍ଭବ ନୁହେଁ ।

ରାଜା ରାଜସଭା ଡକାଇ ଏ ପ୍ରସ୍ତାବର ବିଶେଷ ଆଲୋଚନା କରାଇଲେ । ସ୍ଥିର ହେଲା—ଇଟାଲିର ରାଜାଙ୍କୁ ଏହିପରି ଅନୁରୋଧ କରି ପତ୍ର ପଠାଯାଉ । ଫ୍ରାନସର ଶାସନ ଲୋକପ୍ରତିନିଧିମାନେ ଚଳାନ୍ତି । ତେଣୁ ସେ ଦେଶର ସରକାର ଜଣେ ରାଜାଙ୍କ ଅନୁରୋଧପ୍ରତି ବିଶେଷ ସମ୍ମାନ ପ୍ରଦର୍ଶନ କରିନପାରନ୍ତି । କିନ୍ତୁ ଇଟାଲିର ରାଜା ଅନ୍ୟ ଜଣେ ବନ୍ଧୁ ରାଜାଙ୍କର ଅନୁରୋଧ ଅବଶ୍ୟ ରକ୍ଷାକରିବେ ଓ ଫ୍ରାନ୍ସସରକାରଙ୍କ ପରି ଅତିରିକ୍ତ ଅର୍ଥ ଦାବି କରିବେ ନାହିଁ ।

ଇଟାଲିର ରାଜାଙ୍କ ନିକଟକୁ ପତ୍ର ପ୍ରେରିତ ହେଲା ଓ ଅତି ଅଳ୍ପଦିନ ମଧ୍ୟରେ ଉତ୍ତର ଆସିଲା ଯେ ବାର ହଜାର ଫ୍ରାଙ୍କ୍ ଦେଲେ ତାଙ୍କ ସରକାର ପ୍ରାଣଦଣ୍ଡ ଦେବାର ଯନ୍ତ୍ର ଓ ଜଣେ ଘାତକ ପଠାଇପାରିବେ ।

ଗୋଟାଏ ଅପରାଧୀ ସକାଶେ ଏତେଗୁଡ଼ାଏ ଅର୍ଥ ବ୍ୟୟ କରିବା ଅବଶ୍ୟ ଅପବ୍ୟୟ ମାତ୍ର । ପୁଣି ରାଜସଭା ଆହ୍ୱାନ କରାଗଲା । ସଭାସଦ୍‌ମାନେ ବସି ଅଳ୍ପ ବ୍ୟୟରେ କିପରି ଲୋକଟାକୁ ମୃତ୍ୟୁଦଣ୍ଡ ଦିଆଯାଇ ପାରିବ, ତାହାର ବିଶଦ ଆଲୋଚନା କଲେ । ଜଣେ ପ୍ରସ୍ତାବ କଲେ ଯେ କୌଣସି ସୈନିକ-ଦ୍ୱାରା ଲୋକଟାର ମସ୍ତକ ଛେଦନ କରାଯାଉ । ଏ ବିଷୟରେ ସେନାପତିଙ୍କ ମତ ପଚରାଗଲା । ସୈନ୍ୟମାନେ ଯୁଦ୍ଧ କ୍ଷେତ୍ରରେ ନରହତ୍ୟା କରନ୍ତି । ବାସ୍ତବରେ ଏହି ଉଦ୍ଦେଶ୍ୟରେ ହିଁ ସେମାନେ ଯୁଦ୍ଧବିଦ୍ୟା ଶିକ୍ଷା କରିଥାନ୍ତି । ତେବେ କୌଣସି ସୈନିକ ଜଣେ ଅପରାଧୀର ମସ୍ତକ ଛେଦନ କରିବାରେ କ୍ଷତି କଅଣ ? ସେନାପତି ସୈନ୍ୟମାନଙ୍କୁ ପଚାରିଲେ । କିନ୍ତୁ ଏହି କାର୍ଯ୍ୟ କରିବାକୁ କୌଣସି ସୈନିକ ସ୍ୱୀକୃତ ହେଲା ନାହିଁ । ସେମାନେ କହିଲେ, "ଆମେମାନେ ଏ କାର୍ଯ୍ୟ କରିବାକୁ ଅକ୍ଷମ । ଯୁଦ୍ଧ କ୍ଷେତ୍ରରେ ଶତ୍ରୁକୁ ବଧ କରିବାକୁ ଆମେମାନେ ଶିକ୍ଷା ପାଇଅଛୁ । ଅପରାଧୀର ମସ୍ତକ ଛେଦନ କରିବାପାଇଁ ଆମମାନଙ୍କୁ ଶିକ୍ଷା ଦିଆଯାଇନାହିଁ ।"

ଏପରି କ୍ଷେତ୍ରରେ କର୍ତ୍ତବ୍ୟ କଅଣ ? ମନ୍ତ୍ରୀମାନେ ପୁନରାୟ ସଭାକରି ବିଷୟଟିର ପୁଙ୍ଖାନୁପୁଙ୍ଖ ଆଲୋଚନା କଲେ । କମିଶନ, କମିଟି, ସବ୍‌କମିଟି ବସି ବିଚାର କଲେ । ଶେଷରେ ସିଦ୍ଧାନ୍ତ ହେଲା ଯେ ଲୋକଟିକୁ ମୃତ୍ୟୁଦଣ୍ଡ

ପରିବର୍ତ୍ତେ ଯାବଜ୍ଜୀବନ କାରାଦଣ୍ଡ ଦିଆଗଲେ ସମସ୍ୟାର ସମାଧାନ ସଙ୍ଗେ ରାଜାଙ୍କର ଦୟା ପ୍ରକାଶପାଇବ ।

ରାଜା ଏହି ପ୍ରସ୍ତାବରେ ସ୍ୱୀକୃତ ହେଲେ । ତଥାପି ଅନ୍ୟ ଏକ ସମସ୍ୟାର ଉଦ୍ଭବ ହେଲା । ଯାବଜ୍ଜୀବନ କାରାଦଣ୍ଡ ଭୋଗିବାଭଳି ଅପରାଧୀଙ୍କ ପାଇଁ ଉପଯୁକ୍ତ କାରାଗାରର ଅଭାବ । ଅବଶ୍ୟ ଅଳ୍ପ ଦିନ ପାଇଁ ଅପରାଧୀମାନଙ୍କୁ ବନ୍ଦୀ ଭାବରେ ରଖିବା ସକାଶେ ଗୋଟିଏ ହାଜତ ଘର ଥିଲା, କିନ୍ତୁ ଚିରଦିନ ପାଇଁ ବନ୍ଦୀଶାଳାରୂପେ ବ୍ୟବହାରର ଉପଯୋଗୀ ଗୃହ ନଥିଲା । ତେଣୁ ମନ୍ତ୍ରୀ ଓ ରାଜକର୍ମଚାରୀମାନେ ଗୋଟିଏ ସ୍ଥାନ ନିରୂପଣ କରି ସେଥିରେ ଅପରାଧୀକୁ ବନ୍ଦୀ କରି ରଖିଲେ ଓ ତାକୁ ଜଗିବାପାଇଁ ଜଣେ ପ୍ରହରୀ ନିଯୁକ୍ତ କଲେ । ପ୍ରହରୀ କେବଳ ଯେ ବନ୍ଦୀକୁ ଜଗୁଥିଲା ତାହା ନୁହେଁ; ରାଜପ୍ରାସାଦରୁ ପ୍ରତ୍ୟହ ବନ୍ଦୀପାଇଁ ଖାଦ୍ୟ ଆଣିଦେବା ମଧ୍ୟ ତାହାର କର୍ତ୍ତବ୍ୟର ଏକ ଅଙ୍ଗ ଥିଲା ।

ଏହିପରି ଏକବର୍ଷ ଅତିକ୍ରାନ୍ତ ହେଲା । ବର୍ଷ ଶେଷରେ ରାଜ୍ୟର ଆୟବ୍ୟୟ ହିସାବ ପରୀକ୍ଷା କରୁ କରୁ ରାଜା ଦେଖିଲେ ଯେ ବନ୍ଦୀ ନିମନ୍ତେ ଗୋଟିଏ ନୂତନ ଖର୍ଚ୍ଚର ବ୍ୟବସ୍ଥା ହୋଇଅଛି ଓ ଏହି ବ୍ୟୟର ପରିମାଣ ଊଣା ନୁହେଁ । ବନ୍ଦୀ ସକାଶେ ଜଣେ ସ୍ୱତନ୍ତ୍ର ପହରୀ ନିଯୁକ୍ତ ହୋଇଅଛି । ବନ୍ଦୀର ଖାଦ୍ୟପାଇଁ ମଧ୍ୟ ଖର୍ଚ୍ଚ ହୋଇଅଛି । ଏଥିରେ ବ୍ୟୟର ପରିମାଣ ଛଅଶହ ଫ୍ରାଙ୍କରୁ ଅଧିକ । କେବଳ ଏତିକିରେ ଯେ ବ୍ୟୟର ଶେଷ ହେଲା, ତାହା ନୁହେଁ, ଲୋକଟାର ବୟସ ବେଶି ନୁହେଁ, ଆଉ ମଧ୍ୟ ସେ ବେଶ୍ ସୁସ୍ଥ ଓ ସବଳ । ସ୍ୱଚ୍ଛନ୍ଦରେ ଆହୁରି ପଚାଶବର୍ଷ ବଞ୍ଚିପାରେ । ହିସାବ କରି ଦେଖିଲେ ଜଣାଯିବ ଯେ ଅବସ୍ଥା ସାଙ୍ଘାତିକ । ଏପରି ଆର୍ଥିକ ଦୂରବସ୍ଥା ଅବହେଳା କରାଯାଇନପାରେ ।

ରାଜା ମନ୍ତ୍ରୀସଭା ଡକାଇ କହିଲେ, "ଏ ସଇତାନ ପାଇଁ କୌଣସି ଅଳ୍ପବ୍ୟୟସାଧ୍ୟ ବ୍ୟବସ୍ଥା କରିବା ଆବଶ୍ୟକ । ବର୍ତ୍ତମାନ ପ୍ରଚଳିତ ବ୍ୟବସ୍ଥାରେ ଅତିରିକ୍ତ ବ୍ୟୟ ହେଉଅଛି ।" ମନ୍ତ୍ରୀମଣ୍ଡଳରେ ବିତର୍କ ପଡ଼ିଲା । ଜଣେ କହିଲେ, "ମୋ ମତରେ ପ୍ରହରୀକୁ ବାହାର କରିଦିଆଯାଉ ।" ଅନ୍ୟ ଜଣେ ମନ୍ତ୍ରୀ ପ୍ରତିବାଦ କରି କହିଲେ, 'ପ୍ରହରୀ ନ ରହିଲେ ବନ୍ଦୀ ପଳାଇ

ଯିବ ।'' ପ୍ରଥମ ମନ୍ତ୍ରୀ କହିଲେ, ''ବନ୍ଦୀ ପଳାଇ ଗଲେ ଯାଉ, ସେଥିରେ କ୍ଷତି କଅଣ ?''

ଏହି ପ୍ରସ୍ତାବ ରାଜାଙ୍କ ସମକ୍ଷରେ ଆଗତ କରାଯିବାରୁ ସେ ଏଥିରେ ସ୍ୱୀକୃତ ହେଲେ । ପ୍ରହରୀକୁ ବିଦାୟ ଦିଆଗଲା । କାରାଗାରର ଦ୍ୱାର ଉନ୍ମୁକ୍ତ ରହିଲା । ବନ୍ଦୀ କଅଣ କରିବ ଦେଖିବାପାଇଁ ସମସ୍ତେ ଅପେକ୍ଷା କରି ରହିଲେ । କିନ୍ତୁ ତାର ପଳାଇ ଯିବାର କୌଣସି ଲକ୍ଷଣ ଦେଖାଗଲା ନାହିଁ । ସେ ବନ୍ଦୀଶାଳାରେ ରହିଲା; କେବଳ ଭୋଜନ ସମୟ ଉପସ୍ଥିତ ହେଲେ ସେ ବନ୍ଦୀଶାଳାରୁ ରାଜପ୍ରାସାଦକୁ ଯାଇ ନିଜର ଖାଦ୍ୟ ନେଇ ଆସେ । ପ୍ରତିଦିନ ସେ ଏହିପରି ବନ୍ଦୀଶାଳାରୁ ଯାଇ ରାଜପ୍ରାସାଦରୁ ଖାଦ୍ୟ ଆଣି ଖାଏ ଓ ବନ୍ଦୀ- ଶାଳାରେ ରହିଥାଏ । କେବେହେଲେ ବନ୍ଦୀଶାଳାରୁ ଖସିଯିବାପାଇଁ ସେ ଲବମାତ୍ର ଉଦ୍ୟମ କଲାନାହିଁ ।

ପୁଣି ମନ୍ତ୍ରୀମାନଙ୍କର ଚିନ୍ତା ଉପସ୍ଥିତ ହେଲା । ଏବେ କଅଣ କରା-ଯିବ ? ସେମାନେ ସ୍ଥିର କଲେ ଯେ ବନ୍ଦୀକୁ କାରାଗାରରେ ରଖିବା ସେମାନଙ୍କର ଇଚ୍ଛା ନୁହେଁ ବୋଲି ତାକୁ ସ୍ପଷ୍ଟ ଜଣାଇଦିଆଯାଉ ।

ଶେଷରେ ବିଚାର ବିଭାଗର ମନ୍ତ୍ରୀ ବନ୍ଦୀକୁ ଡକାଇ କହିଲେ, ''ତୋତେ ଜଗିବା ପାଇଁ ପ୍ରହରୀ ନାହିଁ । ତୁ ପଳାଇ ଯାଉନାହୁଁ କାହିଁକି ? ତୁ ଯେଉଁଆଡ଼େ ଇଚ୍ଛା ସେଆଡ଼େ ଯାଇପାରୁ । ରାଜା ମଧ୍ୟ ସେଥିପାଇଁ ତୋତେ କୌଣସି ଦଣ୍ଡ ଦେବେ ନାହିଁ ।''

ବନ୍ଦୀ ଉତ୍ତରକଲା, ''ମୁଁ ନିଶ୍ଚୟ କରି ଜାଣେ ଯେ ମୋର କାରାଗାରରୁ ପଳାଇବାରେ ମହାରାଜ କୌଣସି ଆପତ୍ତି କରିବେ ନାହିଁ; କିନ୍ତୁ ମୁଁ କେଉଁଠାକୁ ଯିବି ? ଆପଣମାନେ ମୋ ପ୍ରତି ଦଣ୍ଡ ବିଧାନ କରି ମୁଁ ନଷ୍ଟଚରିତ୍ର ବୋଲି ଜଣାଇ ଦେଇଅଛନ୍ତି । ତେଣୁ ଲୋକେ ମୋତେ ପାଖରେ ସ୍ଥାନ ଦେବେ ନାହିଁ । ମୁଁ ପରିଶ୍ରମ କରିବାର ଅଭ୍ୟାସ ଭୁଲି ଦେଲିଣି । ଆପଣମାନେ ମୋପ୍ରତି ଘୋର ଅନ୍ୟାୟ କରିଅଛନ୍ତି । ପ୍ରଥମତଃ,

ଯେତେବେଳେ ମୋର ମୃତ୍ୟୁଦଣ୍ଡର ଆଦେଶ ହେଲା, ସେତେବେଳେ ମୋର ଶିରଚ୍ଛେଦନ କରିବା ଉଚିତ ଥିଲା; କିନ୍ତୁ ଆପଣମାନେ ତାହା କଲେ ନାହିଁ । ସେଥିରେ ମୁଁ ଆପତ୍ତି କରିନଥିଲି । ତତ୍ପରେ ଆପଣମାନେ ମୋତେ ଯାବଜ୍ଜୀବନ କାରାଦଣ୍ଡ ଦେଇ ମୋର ଖାଦ୍ୟ ଆଣିବାକୁ ଜଣେ ପ୍ରହରୀ ନିଯୁକ୍ତ କଲେ । କିଛି ଦିନ ପରେ ତାକୁ ବାହାର କରି ଦିଆଯିବାରୁ ମୁଁ ନିଜେ ଯାଇ ମୋର ଖାଦ୍ୟ ଆଣୁଥିଲି । ସେଥିରେ ମଧ୍ୟ ମୁଁ ଆପତ୍ତି କରିନଥିଲି । ଏବେ ଆପଣମାନେ ଚାହାନ୍ତି ଯେ ମୁଁ ଏଠାରୁ ଚାଲିଯାଏ । ମାତ୍ର ମୁଁ ତାହା କରିନପାରେ । ଆପଣମାନଙ୍କର ଯାହା ଇଚ୍ଛା ତାହା କରିପାରନ୍ତି; କିନ୍ତୁ ମୁଁ କଦାପି ଏଠାରୁ ବାହାରି ଯିବି ନାହିଁ ।" ବିଷମ ସମସ୍ୟା ଉପସ୍ଥିତ । କଅଣ କରାଯିବ ?

ପୁଣି ସଭା ବସିଲା । ସଭାସଦମାନେ ଅନେକ ଚିନ୍ତା କରି ନାନା ଦିଗରୁ ଅବସ୍ଥାର ଆଲୋଚନା କଲେ । ବିଚାରରେ ସ୍ଥିର ହେଲା ଯେ, ଲୋକଟାଠାରୁ ରକ୍ଷା ପାଇବାର ଏକମାତ୍ର ଉପାୟ ହେଉଛି, ତାପାଇଁ କିଛି ବୃତ୍ତି ବାନ୍ଧି ଦେଇ ତାକୁ ବିଦାୟ ଦେବା । ସଭାସଦ୍‌ମାନଙ୍କ ପରାମର୍ଶରେ ରାଜା ତାହା ପାଇଁ ବାର୍ଷିକ ଛଅଶହ ଫ୍ରାଙ୍କର ଗୋଟିଏ ବୃତ୍ତି ବାନ୍ଧିଦେଲେ । ବନ୍ଦୀକୁ ଏହି ନିଷ୍ପତ୍ତି ଜଣାଇଦିଆଗଲା ।

ସେ କହିଲା, "ମୋତେ ଯଦି ନିୟମିତ ଭାବରେ ବୃତ୍ତି ମିଳିବାର ବ୍ୟବସ୍ଥା ହୁଏ, ତେବେ ଏ ପ୍ରସ୍ତାବରେ ମୋର ଆପତ୍ତି ନାହିଁ । କେବଳ ସେହି ସର୍ତ୍ତରେ ମୁଁ ବନ୍ଦୀଶାଳା ଛାଡ଼ି ଯାଇପାରେ ।"

ଯାହାହେଉ, ଏହି ପ୍ରକାରରେ ସମସ୍ୟାର ସମାଧାନ ହେଲା । ବାର୍ଷିକ ବୃତ୍ତିର ଏକତୃତୀୟାଂଶ ଅଗ୍ରୀମ ନେଇ ସେ ମନାକୋ ରାଜ୍ୟରୁ ବିଦାୟ ନେଲା । ରେଲରେ ମାତ୍ର ପନ୍ଦର ମିନିଟର ପଥ ଯିବା ପରେ ସେ ମନାକୋ ରାଜ୍ୟର ସୀମା ପାରହୋଇଗଲା । ସେ ଅନ୍ୟ ରାଜ୍ୟରେ କିଛି ଭୂସମ୍ପତ୍ତି କିଣି କରି ସେଠାରେ ସୁଖରେ ବାସ କରିବାକୁ ଲାଗିଲା । ନିଜ ଜମିରେ ଯାହା

କିଛି ପନିପରିବା କରି ସେ ତାହାରି ଦ୍ୱାରା ଜୀବିକା ନିର୍ବାହ କଲା । କେବଳ ବର୍ଷକେ ଥରେ ନିର୍ଦ୍ଦିଷ୍ଟ ଦିନ ସେ ମନାକୋ ରାଜ୍ୟକୁ ଯାଇ ତା'ହାର ବାର୍ଷିକ ବୃତ୍ତି ନେଇଆସେ । ସେ ଦିନ ସେ ମନହେଲେ ଜୁଆଖେଳ ଆଡ୍‌ଡ଼ାକୁ ମଧ୍ୟ ଯାଏ । କେବେ କିଛି ଜିତେ, କେବେ ଅବା ହାରେ; ତାପରେ ନିଜ ଘରକୁ ଚାଲିଆସେ । ସେ ବେଶ୍ ସୁଖଶାନ୍ତିରେ ଦିନ କାଟୁଛି ।

ତାର ସୌଭାଗ୍ୟ ଯେ ଯେଉଁ ରାଜ୍ୟର ସରକାର ଅପରାଧୀକୁ ପ୍ରାଣଦଣ୍ଡ ଦେବାପାଇଁ ବା ଯାବଜ୍ଜୀବନ ବନ୍ଦୀ କରି ରଖିବାପାଇଁ ଅକାତରରେ ଅର୍ଥ-ବ୍ୟୟ କରିବାକୁ କୁଣ୍ଠିତ ନୁହନ୍ତି, ସେଭଳି ରାଜ୍ୟରେ ସେ ନରହତ୍ୟା ଅପରାଧ କରିନଥିଲା ।

# ଇଲଆସ

ଉଫା ରାଜ୍ୟରେ ଇଲଆସ ନାମରେ ଜଣେ ଲୋକ ବାସ କରୁଥିଲା । ଯଥାସମୟରେ ତାର ବିବାହ ହେଲା । କିନ୍ତୁ ବିବାହର ଠିକ୍ ବର୍ଷେକ ପରେ ତାର ପିତାଙ୍କର ମୃତ୍ୟୁ ଘଟିଲା । ପିତା ତାହାପାଇଁ ଯଥେଷ୍ଟ ସମ୍ପତ୍ତି ରଖି ଯାଇ ନଥିଲେ । ସାତଟି ମାଈ ଘୋଡ଼ା, ଦୁଇଟି ଗାଈ ଓ କୋଡ଼ିଏଟି ମେଣ୍ଢା ଛଡ଼ା ଇଲଆସର ଆଉ କିଛି ନଥିଲା । କିନ୍ତୁ ସେ ଉତ୍ତମରୂପେ କଠିନ ପରିଶ୍ରମ କରୁଥିବାରୁ ଅଳ୍ପ ଦିନ ଭିତରେ ତାର ପଶୁସଂଖ୍ୟା ବୃଦ୍ଧି ପାଇଗଲା । ସେ ଓ ତାର ସ୍ତ୍ରୀ ଖୁବ୍ ସକାଳୁ ରାତିଅଧ ପର୍ଯ୍ୟନ୍ତ କାମରେ ଲାଗିଥାନ୍ତି । କେହି ନ ଉଠୁଣୁ ସେ ଦୁହେଁ ସକାଳୁ ଉଠିଥାନ୍ତି ଓ ରାତିରେ ସମସ୍ତେ ଶୋଇବା ପରେ ସେ ଦୁହେଁ ଶୋଇବାକୁ ଯାଆନ୍ତି । ଦିନକୁ ଦିନ ତାର ସମ୍ପତ୍ତି ବଢ଼ିବାକୁ ଲାଗିଲା । ଏହିପରି କଠୋର ପରିଶ୍ରମ କରି ଓ ସରଳ ଜୀବନ ଯାପନକରି ଇଲଆସ ପ୍ରଚୁର ସମ୍ପତ୍ତି ଅର୍ଜନକଲା । ପଞ୍ଚତିଂଶ ବର୍ଷ ପରେ ଦେଖାଗଲା ଯେ ତାର ଦୁଇଶ ଘୋଡ଼ା, ଦେଢ଼ଶ ଗାଈଗୋରୁ ଓ ବାରଶହ ମେଣ୍ଢା ହୋଇଯାଇଛନ୍ତି । ତାର ଚାକର ଚାକରାଣୀମାନେ ଏମାନଙ୍କର ଯତ୍ନ ନେଉଥାନ୍ତି, ଦୁଧ ଦୁହିଁ ସେଥିରୁ ଦହି, ଲହୁଣୀ, ଘିଅ, ଛେନା ପ୍ରଭୃତି ତିଆରି କରୁଥାନ୍ତି । ଇଲଆସର କିଛିମାତ୍ର ଅଭାବ ନଥାଏ । ସେ ଅଞ୍ଚଳର ଲୋକେ ତାର ସମ୍ପତ୍ତି ଦେଖି ତାକୁ ଈର୍ଷା କରିବାକୁ ଲାଗିଲେ । ଲୋକେ କହନ୍ତି—ଇଲଆସ ବଡ଼ ଭାଗ୍ୟବାନ୍, ତାର କିଛି ହେଲେ ଅଭାବ ନାହିଁ; ସଂସାରରେ କେତେ ଜଣ ତା ଭଳି ସୁଖରେ ଚଳୁଛନ୍ତି ?

ଧନୀ ଓ ମାନ୍ୟଗଣ୍ୟ ଲୋକେ ଇଲଆସର ନାଁ ଶୁଣି ତା'ସଙ୍ଗେ ପରିଚିତ ହେବାକୁ ଚେଷ୍ଟା କଲେ । ଦୂର ଅଞ୍ଚଳରୁ ଲୋକେ ଇଲଆସର ସାକ୍ଷାତ ପାଇଁ ଆସିଲେ । ସେ ସେମାନଙ୍କୁ ଅଭ୍ୟର୍ଥନା କରି ଉତ୍ତମ ଖାଦ୍ୟ-ପେୟ ଦେଉଥିଲା । ଯେ କେହି ଆସି ପହଞ୍ଚିଲେ ଇଲଆସ ତାଙ୍କପାଇଁ ଖାଦ୍ୟ ପେୟ ବ୍ୟବସ୍ଥା କରୁଥିଲା । ଅତିଥିମାନେ ଆସିଲେ ଗୋଟିଏ ମେଣ୍ଢା କଟା-

ହେବା ନିଶ୍ଚିତ । ବେଳେବେଳେ ଅତିଥିସଂଖ୍ୟା ବେଶୀ ଥିଲେ ଦୁଇଟା ମେଣ୍ଢା ବା ଗୋଟାଏ ଘୋଡ଼ା କଟାଯାଉଥିଲା ।

ଇଲିଅସର ଦୁଇଟି ପୁଅ ଓ ଗୋଟିଏ ଝିଅ ଥିଲେ । ସେ ସେମାନଙ୍କୁ ଉପଯୁକ୍ତ ପାତ୍ରରେ ବିବାହ କରାଇଦେଲା । ଇଲିଆସ ଗରିବ ଥିଲାବେଳେ ପୁଅମାନେ ତାହା ସଙ୍ଗେ କାମକରି ଗୋରୁ ମେଣ୍ଢାଙ୍କ କଥା ବୁଝୁଥିଲେ; କିନ୍ତୁ ସେ ଧନୀ ହୋଇଯିବାରୁ ସେମାନେ ଆଉ କାମ ନକରି ଅଯଥରଣ ହୋଇ-ଗଲେ । ମଦ୍ୟପାନ ସେମାନଙ୍କର ଅଭ୍ୟାସ ହୋଇଗଲା । ବଡ଼ ପୁଅଟି ଦିନେ ମାତାଲ ଅବସ୍ଥାରେ ଅନ୍ୟ ଜଣକ ସଙ୍ଗେ କଳହ କରୁ କରୁ ମୃତ୍ୟୁ ମୁଖରେ ପଡ଼ିଲା ।

ସାନପୁଅଟିର ସ୍ତ୍ରୀ ବଡ଼ ସ୍ୱାର୍ଥପରାୟଣା; ଯାହା ଇଚ୍ଛା ତାହା କରେ । ସେ ପୁଅ ମଧ୍ୟ ବାପର କଥା ମାନିଲା ନାହିଁ । ଅବସ୍ଥା ଏପରି ହେଲା ଯେ ବାପପୁଅ ଏକାଠି ଚଳିବା ଅସମ୍ଭବ ହୋଇଉଠିଲା । ଶେଷରେ ବାପପୁଅ ଭିନ୍ନେ ହୋଇଗଲେ ।

ଇଲିଆସ ସାନ ପୁଅକୁ ଖଣ୍ଡିଏ ଘର ଓ କିଛି ଗୋରୁଗାଈ ଦେଲା । ଏହା ଫଳରେ ତାର ସମ୍ପତ୍ତି କିଛି କମିଗଲା । ଏହି ଘଟଣାର କିଛି କାଳ ପରେ ମେଣ୍ଢା ପଲରେ ଗୋଟାଏ ରୋଗ ପଶିଲା । ସେଥିରେ ଇଲିଆସର ଅନେକ ମେଣ୍ଢା ମରିଗଲେ । ଏହାର ପର ବର୍ଷ ଅନ୍ୟ ଏକ ବିପଦ ଉପସ୍ଥିତ ହେଲା । ସେ ବର୍ଷ କୃଷିହାନି ହେଲା ଓ କେତେକ ଗୋରୁ ରୋଗରେ ମରି-ଗଲେ । ଯେଉଁ ସାମାନ୍ୟ ଘୋଡ଼ା, ଗୋରୁ ଓ ମେଣ୍ଢା ଥିଲେ, ସେମାନଙ୍କୁ ମଧ୍ୟ ଇଲିଆସ ରକ୍ଷିପାରିଲା ନାହିଁ । ଲୁଣ୍ଠନକାରୀ ଖିରଗିଜ ଜାତିର ଲୋକେ ଆସି ତାର ଘୋଡାଗୁଡ଼ିକ ନେଇ ପଳାଇଲେ । ଏହିପରି ଗ୍ରହୁଁ ଗ୍ରହୁଁ ଇଲିଆସର ସମ୍ପତ୍ତି ସରିଆସିଲା । ଏଣେ ଧନ ସରିଆସିଲା ବେଳକୁ ଇଲିଆସର ଦେହର ବଳ ମଧ୍ୟ କମିଆସିଲା । ସତୁରି ବର୍ଷ ହେଲାବେଳକୁ ଇଲିଆସର ସବୁ ସମ୍ପତ୍ତି ଚାଲିଯାଇଥିଲା ଓ ସେ ଘରର ଆସବାବ ବିକ୍ରି କରି ଚଳିବାକୁ ବାଧ୍ୟହୋଇଥିଲା । ପରିଶେଷରେ ତାକୁ ଅବଶିଷ୍ଟ ଗୋରୁ ଓ ମେଣ୍ଢା ବିକିବାକୁ ପଡ଼ିଲା । ତଥାପି ଅଭାବ ମେଣ୍ଟିଲା ନାହିଁ । ତାର ସମ୍ପତ୍ତି କିପରି କୁଆଡ଼େ ଗଲା ସେ ଖବର ପାଇଲା ନାହିଁ । ଅନ୍ୟ ଉପାୟ ନଦେଖି ସେ

ଓ ତାର ସ୍ତ୍ରୀ ଗୃହଶୂନ୍ୟ କରିବାକୁ ବାହାରିଲେ । ସେତେବେଳକୁ ନିଜ ଦେହର ଲୁଗାପଟା ଓ ଖଣ୍ଡିଏ କମ୍ବଳ ଛଡ଼ା ସେମାନଙ୍କର ଆଉ କିଛି ନଥାଏ । ପୁଅଟି କେଉଁ ଦୂର ଦେଶକୁ ଚାଲିଯାଇଥିଲା ଓ ଝିଅର ମୃତ୍ୟୁ ହୋଇଯାଇଥିଲା । ତେଣୁ ବୁଢ଼ା ବୁଢ଼ୀଙ୍କୁ ସାହାଯ୍ୟ କରିବାପାଇଁ ସଂସାରରେ ସେମାନଙ୍କର କେହି ନଥିଲେ ।

ମହମ୍ମଦଶା ଇଲିଆସର ପ୍ରତିବେଶୀ । ଇଲିଆସ ଓ ତାର ସ୍ତ୍ରୀଙ୍କର ଦୁର୍ଦ୍ଦଶା ଦେଖି ତା'ମନରେ ଦୟା ଆସିଲା । ସେ ନିଜେ ଖୁବ୍ ଧନୀ ନଥିଲା କି ଦରିଦ୍ର ନଥିଲା । ନିଜ ଆୟରେ କୌଣସି ପ୍ରକାରେ ଚଳିଯାଉଥିଲା । ଲୋକଟି ବଡ଼ ଉତ୍ତମ । ଇଲିଆସ କିପରି ଅତିଥି ସେବାକରୁଥିଲା ସେ ଜାଣେ । ସେ ଇଲିଆସକୁ କହିଲା, "ଭାଇ, ତୁମେ ଦୁଇ ପ୍ରାଣୀ ଆସି ମୋ ଘରେ ରହ । ତୁମେ ଯେତିକି ପାରିବ ମୋ ବଗିଚାରେ ସେତିକି କାମ କରିବ । ତୁମ ସ୍ତ୍ରୀ ମୋ ଘରେ ରହି ଗାଈ ଦୁହିଁ ଦହି, ଛେନା ପ୍ରସ୍ତୁତ କରିପାରିବ । ମୋର ଶକ୍ତି ଅନୁଯାୟୀ ମୁଁ ତୁମ ଦୁହିଁଙ୍କୁ ଖାଇବାକୁ ଓ ପିନ୍ଧିବାକୁ ଦେବି । ତାହାଛଡ଼ା ତୁମର ଯଦି ଆଉ କିଛି ଲୋଡ଼ା ହେବ ମୋତେ କହିଲେ, ମୁଁ ଦେବି ।"

ଇଲିଆସ ମହମ୍ମଦଶାକୁ ଧନ୍ୟବାଦ ଦେଇ ସ୍ତ୍ରୀକୁ ନେଇ ତା'ଘରେ ଚାକରି କଲା । ପ୍ରଥମେ ପ୍ରଥମେ ସେ ଦୁହିଁଙ୍କୁ ଅବଶ୍ୟ କିଛିଏ ଅଡୁଆ ଲାଗୁଥିଲା; କିନ୍ତୁ କିଛି ଦିନପରେ ସବୁ ଅଭ୍ୟାସରେ ପଡ଼ିଗଲା । ଦୁହେଁ ନିଜର ଶକ୍ତି ଅନୁଯାୟୀ କାମ କରୁଥାନ୍ତି ।

ମହମ୍ମଦଶା ଦେଖିଲା ଯେ ଏପରି ଲୋକଙ୍କୁ ରଖିବାଦ୍ୱାରା ତାର ଲାଭ ଛଡ଼ା କ୍ଷତି ହୋଇ ନାହିଁ; କାରଣ ଏକ ସମୟରେ ସେମାନେ ନିଜେ ଘରକରଣା ରଖିଥିବାରୁ କିପରି କାମ କରିବା ଦରକାର ତାହା ଜାଣିଥିଲେ । ସହଜେ ସେମାନେ ଆଳସ୍ୟ କରୁନଥିଲେ ଏବଂ ଯେତେ ଦୂର ପାରନ୍ତି ପରିଶ୍ରମ କରୁଥିଲେ । କିନ୍ତୁ ଯେଉଁମାନେ ଦିନେ ଏଡ଼େ ଧନୀ ଓ ମାନ୍ୟଗଣ୍ୟ ଲୋକଥିଲେ, ସେମାନଙ୍କର ଏଭଳି ଦୁରବସ୍ଥା ଦେଖି ମହମ୍ମଦଶା ବେଳେ ବେଳେ ଦୁଃଖ ପ୍ରକାଶ କରୁଥିଲା ।

ଦିନେ ମହମ୍ମଦଶାର କେତେଜଣ ବନ୍ଧୁ ଦୂର ଅଞ୍ଚଳରୁ ତା ଘରକୁ ଆସିଥିଲେ । ସେମାନଙ୍କ ସଙ୍ଗରେ ଜଣେ ଫକୀର ମଧ୍ୟ ଆସିଥିଲେ । ମହମ୍ମଦଶା ଇଲିଆସକୁ କହିଲା, "ଆଜି ଅତିଥିମାନଙ୍କ ପାଇଁ ଗୋଟିଏ ମେଣ୍ଢା ମାରି ତରକାରୀ କର ।" ଇଲିଆସ ସେହିପରି କଲା । ବନ୍ଧୁମାନେ ଖାଇପିଇ ସାରି ମହମ୍ମଦଶା ସହିତ ଗଳ୍ପ କରିବାକୁ ଲାଗିଲେ । ଇଲିଆସ ନିଜର କାମ ଶେଷକରି ସେହିବାଟେ ଯାଉଥିବାର ଦେଖି ମହମ୍ମଦଶା ଅତିଥିମାନଙ୍କୁ କହିଲା, "ଏଇ ଯେ ବୃଦ୍ଧ ଲୋକଟି ଏବାଟେ ଗଲା, ତାକୁ ଦେଖିଲ ?"

ଜଣେ ବନ୍ଧୁ କହିଲେ, "ହଁ ଦେଖିଲୁ । ତେବେ ଏ ବୃଦ୍ଧଙ୍କଠାରେ କଅଣ କିଛି ବିଶେଷତ୍ୱ ଅଛି ?

ମହମ୍ମଦଶା—ନିଶ୍ଚୟ, ବିଶେଷତ୍ୱ ଅଛି । ଦିନେ ସେ ଏହି ଅଞ୍ଚଳରେ ସର୍ବାପେକ୍ଷା ଧନୀ ଲୋକ ବୋଲି ପରିଚିତ ଥିଲା । ତାର ନାମ ଇଲିଆସ । ହୁଏ ତ ତୁମେମାନେ ତାର ନାମ ଶୁଣିଥିବ ।

ଜନୈକ ବନ୍ଧୁ—ହଁ, ମୁଁ ତାଙ୍କୁ କେବେ ଦେଖି ନଥିଲି ସତ; କିନ୍ତୁ ବହୁବାର ତାଙ୍କ ନାମ ଶୁଣିଛି । ତାଙ୍କର ଖ୍ୟାତି ଚାରିଆଡ଼େ ଜଣାଶୁଣା !

ମହମଦଶା—ଶୁଣିଥିବ ନିଶ୍ଚୟ । କିନ୍ତୁ ଏବେ ତାର ସେ ପୂର୍ବ ଧନସମ୍ପତ୍ତି ନାହିଁ । ମୋ ଘରେ କାମଧନ୍ଦା କରି ସେ ଚଳୁଛି । ତାର ସ୍ତ୍ରୀ ମଧ୍ୟ ଏଇଠାରେ ଅଛି । ସେ ଗୋରୁଗାଈ ଦୁହାଁଦୁହିଁ କରେ; ଘର କାମରେ ସାହାଯ୍ୟ କରେ ।

ଅତିଥିମାନେ ଅତ୍ୟନ୍ତ ବିସ୍ମିତ ହୋଇ କହିଲେ, "ଭାଗ୍ୟଚକ୍ର ସବୁବେଳେ ଗଡ଼ିଚାଲିଛି । କେତେବେଳେ ଜଣକୁ ଉପରକୁ ଉଠାଉଛି ତ ଆନ ଜଣକୁ ତଳକୁ ପକାଇ ଦେଉଅଛି । ଆଚ୍ଛା, ବୃଦ୍ଧ ଏବେ କଅଣ ତାର ବିଗତ ସୁଖ-ସୌଭାଗ୍ୟ କଥା ଚିନ୍ତାକରି ମନଦୁଃଖ କରେ ନାହିଁ ?

ମହମ୍ମଦଶା—ତା କିଏ କହିବ ? ସେ ନୀରବରେ ଓ ଶାନ୍ତିରେ ଦିନ କଟାଉଥାଏ । କାମ ମଧ୍ୟ ଭଲ କରେ । କେବେ ନିଜ ଦୂରବସ୍ଥା ବିଷୟରେ ଦୁଃଖ କରିବାର ମୁଁ ଜାଣେ ନାହିଁ ।

ଜନୈକ ଅତିଥି—ବୁଢ଼ାର ଜୀବନ ବିଷୟରେ ତାକୁ କିଛି ପଚାରିବା-ପାଇଁ ମୋର ଇଚ୍ଛା ହେଉଅଛି ।

ମହମ୍ମଦଶା—ସେଥିରେ କଅଣ କ୍ଷତି ଅଛି ? ସ୍ୱଚ୍ଛନ୍ଦରେ ପଚାରିପାର ।

ମହମ୍ମଦଶା ବୁଢ଼ାବୁଢ଼ୀ ଦୁହିଁଙ୍କୁ ପାଖକୁ ଡାକିଲେ । ବୃଦ୍ଧ ଅତିଥି-ମାନଙ୍କୁ ଯଥାବିଧି ସମ୍ମାନ ଦେଖାଇ ଈଶ୍ୱରଙ୍କୁ ପ୍ରାର୍ଥନାକରି ସେମାନଙ୍କ ପାଖରେ ବସିଲା । ତାର ସ୍ତ୍ରୀ ପରଦାର ଅନ୍ତରାଳରେ ମହମ୍ମଦଶାର ସ୍ତ୍ରୀ ନିକଟରେ ବସିଲା ।

ଇଲିଆସକୁ ଗୋଟିଏ ପାତ୍ରରେ କିଛି ପାନୀୟ ଦିଆଗଲା । ସେ ନିଜ ପ୍ରଭୁ ତଥା ଅତିଥିମାନଙ୍କର ଶୁଭକାମନା କରି ପ୍ରଣାମପୂର୍ବକ ସେଥିରୁ କିଛି ପିଇ ପାତ୍ରଟିକୁ ତଳେ ରଖିଦେଲା ।

ଅତିଥିମାନେ ବୃଦ୍ଧକୁ ଲକ୍ଷ୍ୟ କରି କହିଲେ, "ମଉସା, ଆମମାନଙ୍କୁ ଦେଖି ତୁମ ମନରେ କଷ୍ଟ ହେଉଥିବ; ତୁମର ପୂର୍ବ ଧନସମ୍ପତ୍ତି, ସୁଖସମ୍ଭୋଗ ଓ ବର୍ତ୍ତମାନ ଦୁରବସ୍ଥା କଥା ମନେପଡ଼ୁଥିବ ।

ଇଲିଆସ ଟିକିଏ ହସିଦେଇ କହିଲା, "ସୁଖ କଅଣ, ଦୁଃଖ କଅଣ, ସେ କଥା ମୁଁ କହିଲେ ଆପଣମାନେ ବିଶ୍ୱାସ କରିବେ ନାହିଁ । ବରଂ ମୋର ସ୍ତ୍ରୀକୁ ପଚାରନ୍ତୁ । ସେ ସରଳ ସ୍ତ୍ରୀ ଲୋକ; ପେଟରେ ଗୋଟାଏ କଥା ରଖି ମୁହଁରେ ଆଉ କିଛି କହିବା ସ୍ତ୍ରୀଲୋକଙ୍କର ପ୍ରକୃତି ନୁହେଁ । ତାହା-ଠାରୁ ଠିକ୍ ସତ କଥା ଶୁଣି ପାରିବେ ।"

ଅତିଥିମାନେ ପରଦା ଆଡ଼କୁ ମୁହଁ କରି କହିଲେ, "ମାଉସୀ, ତୁମର ଆଗ କାଳର ଧନସମ୍ପତ୍ତି, ଆଉ ଏ କାଳର ଦୁଃଖ କଷ୍ଟ କଥା ଭାବିଲେ ତମ ମନ କପରି ହୁଏ, କହିଲ ?"

ପରଦା ପଛରେ ରହି ଇଲିଆସର ସ୍ତ୍ରୀ କହିଲା, "ମୁଁ ଯାହା ବିଚାରୁଛି, ତା କହୁଛି । ମୁଁ ଆଉ ମୋର ସ୍ୱାମୀ ପଚାଶବର୍ଷକାଳ ସୁଖ ପଛରେ ଗୋଡ଼ାଇଥିଲୁ; କିନ୍ତୁ କେବେ ସୁଖ ପାଇଥିଲୁ ବୋଲି କହିହେବ ନାହିଁ । ଗଲା ଦୁଇ ବର୍ଷ ହେଲା, ଆମର ସବୁ ସମ୍ପତ୍ତି ଚାଲିଯିବା ପରେ ଦେହି ମିହିନ୍ତ

କରି ଆମେ ପ୍ରକୃତ ସୁଖ ପାଇଛୁ । ବର୍ତ୍ତମାନ ଆମେ ଯେପରି ଅଛୁ, ସେଥିରେ ଆମେ ସନ୍ତୁଷ୍ଟ । ଆମର ଆଉ ଅଧିକା କିଛି ଲୋଡ଼ା ନାହିଁ ।"

ଅତିଥିମାନେ ଏହା ଶୁଣି ବିସ୍ମିତ ହୋଇଗଲେ । ମହମ୍ମଦଶାର ମଧ୍ୟ କମ ବିସ୍ମୟ ହେଲ ନାହିଁ । ସେ ଉଠିପଡ଼ି ପରଦା ଟେକି ବୁଢ଼ୀ ମୁହଁକୁ ଚାହିଁଲା । ବୁଢ଼ୀ ହାତ ବାନ୍ଧି ଠିଆ ହୋଇ ସ୍ୱାମୀ ଆଡ଼କୁ ଚାହିଁ ଥାଏ; ତାର ମୁହଁରେ ହସ । ଏଣେ ବୁଢ଼ାର ମୁହଁରେ ମଧ୍ୟ ହସ ଫୁଟି ପଡ଼ୁଥାଏ । ବୁଢ଼ୀ କହିବାକୁ ଲାଗିଲା ।

"ମୁଁ ଯାହାକହୁଛି, ଏକବାରେ ସତ । ପରିହାସ ମନେ କରନାହିଁ । ପ୍ରାୟ ପଚାଶ ବର୍ଷ ଆମେ ସୁଖ ଖୋଜି ବୁଲିଛୁ । ଯେତେଦିନଯାଏ ଆମର ଧନ ଥିଲା, ସୁଖ କଅଣ ଜାଣି ନଥିଲୁ । ଏବେ ଆମର କିଛି ନାହିଁ ସତ, ମଜୁରି କାମ କରି ପେଟ ପୋଷୁଛୁ; କିନ୍ତୁ ଆମେ ସୁଖ ପାଇଛୁ । ଏଥିରୁ ବେଶି କିଛି ଆମର ଦରକାର ନାହିଁ ।"

ଅତିଥିମାନେ ପଚାରିଲେ, "କିନ୍ତୁ ତୁମେ କିପରି ସୁଖରେ ଅଛ, ଆମେ ବୁଝି ପାରୁନାହୁଁ ।"

ବୁଢ଼ା କହିଲା, "ଯେତେବେଳେ ଆମର ଧନସମ୍ପତ୍ତି ଥିଲା, ସେତେ-ବେଳେ ଆମ ମନରେ ଟିକିଏ ହେଲେ ଶାନ୍ତି ନ ଥିଲା । ସବୁବେଳେ କିଛିନା କିଛି ଚିନ୍ତା ଲାଗି ରହିଥାଏ । ଏପରିକି ଆମେ ଦୁଇ ପ୍ରାଣୀ ଏକାଠି ବସି ଘଡ଼ିଏ କଥାବାର୍ତ୍ତା ହେବାକୁ ବେଳ ନଥାଏ । ଭଗବାନଙ୍କୁ ପ୍ରାର୍ଥନା କରିବା ପାଇଁ ସୁଦ୍ଧା ଆମକୁ ବେଳ ମିଳେ ନାହିଁ । କେଉଁଦିନ ଅତିଥି ଆସିଲେ, ସେମାନଙ୍କ ଖାଇବା ପାଇଁ କି ବ୍ୟବସ୍ଥା ହେବ, କାହାକୁ କି ଉପହାର ଦିଆଯିବ — ଏସବୁ ଚିନ୍ତା କରିବାକୁ ହୁଏ । କାଳେ ସେମାନେ ଆମର ନିନ୍ଦା କରି କହିବେ, ଏ ଭୟ ରହିଥାଏ । ଅନେକ ଗୁଲିଯାନ୍ତି; କିନ୍ତୁ ମୂଲିଆମାନେ କାମ ନକରି କାଳେ ଖାଲି ବସି ବସି ଖାଇବେ, ସେ ଚିନ୍ତା ପଡ଼ିଥାଏ । ଆମେ ଗୃହସ୍ଥ ଥାଉଁ, ସେମାନଙ୍କଠାରୁ ଯେତେ ବେଶୀ ପାରିବା କାମ ଆଦାୟ କରିନେବା । ଏହାଦ୍ୱାରା ଆମର ପାପ ହେଉଥାଏ । ହେଟାବାଦ ମେଣ୍ଢ଼-ପଲରେ ପଶି କାଳେ ଗୋଟାଏ ମେଣ୍ଢ଼ା ମାରି ପକାଇବ ସେ ଭୟ ଆମର

ଥାଏ; ଶ୍ରେ ରମ ନେ ଘୋଡ଼ା ଶ୍ରେ ରାଇ ନେବାର ଭୟ ଥାଏ । ରାତରେ ମଧ୍ୟ ଆମକୁ ନିଦ ହୁଏ ନାହିଁ, କାଳେ ନେକ୍‌ଟୁଆମାନେ ଛୁଆଙ୍କୁ ମାଡ଼ି ମାରିଦେବେ; ଏହି ଭୟରେ ଆମେ ରାତରେ ଅନେକଥର ଉଠି ସେମାନଙ୍କୁ ଦେଖିବାକୁ ଯାଉଁ । ଗୋଟିଏ ଚିନ୍ତା ନ ଯାଉଣୁ ଆଉ ଗୋଟିଏ ଚିନ୍ତା ପହଞ୍ଚି ଯାଇଥାଏ । ଏ ସବୁ ଛଡ଼ା ଆମ ଦୁଇଜଣଙ୍କ ଭିତରେ ମନ ମିଳୁ ନଥିଲା । ସେ ଗୋଟିଏ କାମ କରିବାକୁ କହିଲେ ମୁଁ ଅନ୍ୟ କାମ କରିବାକୁ କହେଁ । ଦୁହିଁଙ୍କ ମଧ୍ୟରେ ଛୋଟ ଛୋଟ କଥାରୁ କଳି ଲାଗିଯାଏ । ଏଥିରେ ବି ଆମର ପାପ ହୁଏ । ଏକ ଅଶାନ୍ତି ପରେ ଅନ୍ୟ ଏକ ଅଶାନ୍ତି ଏହିପରି ଲାଗି ରହିଥାଏ । ସୁଖଶାନ୍ତି କଅଣ ଆମେ ଜାଣୁ ନଥିଲୁ ।''

ଅତିଥି—ଆଉ ଏବେ ?

ବୁଢ଼ା—''ଏବେ ମୁଁ ଓ ମୋର ସ୍ୱାମୀ ସକାଳୁ ଉଠି ଦୁଇ ପଦ ଭଲ କଥାବାର୍ତ୍ତା କରି ପାରୁଛୁ । କଳିର କୌଣସି କାରଣ ନ ଥିବାରୁ ଆମେ ଏବେ ଶାନ୍ତିରେ ରହିଛୁ । କେବଳ ପ୍ରଭୁଙ୍କର ସେବା କରିବା ଛଡ଼ା ଆମର ଅନ୍ୟ କୌଣସି ଚିନ୍ତା ନାହିଁ । ଆମର ଶକ୍ତି ଅନୁସାରେ ଆମେ କାମ କରୁଛୁ । ଆମର ଏକମାତ୍ର ଲକ୍ଷ୍ୟ, କିପରି ଆମ ପ୍ରଭୁଙ୍କର ଲାଭ ହେଉ; ଆମଯୋଗୁ ତାଙ୍କର କ୍ଷତି ନ ହେଉ । ଆମର ଖାଇବା ପିଇବାର ଅଭାବ ନାହିଁ । ଶୀତଦିନେ ଶୀତରୁ ରକ୍ଷା ପାଇବା ପାଇଁ ଜାଳିବାକୁ କାଠ ମିଳୁଛି ; ପିନ୍ଧିବା ପାଇଁ ଗରମ ଲୁଗା ମିଳୁଛି । ଏବେ ଆମେ କଥାବାର୍ତ୍ତା ହେବାକୁ, ଈଶ୍ୱରଙ୍କୁ ପ୍ରାର୍ଥନା କରିବାକୁ ବେଳ ପାଉଛୁ । ପଚାଶ ବର୍ଷ ଧରି ଆମେ ଯେଉଁ ସୁଖ ଖୋଜି ଖୋଜି ପାଇ ନଥିଲୁ, ଏବେ ତାହା ପାଇଛୁ ।''

ଅତିଥିମାନେ ଏହା ଶୁଣି ହସି ଉଠିଲେ । କିନ୍ତୁ ଇଲିଆସ କହିଲା; ''ଆପଣମାନେ ଉପହାସ କରନ୍ତୁ ନାହିଁ । ଏହା ଉପହାସର ବିଷୟ ନୁହେଁ, ଜୀବନର କଠୋର ସତ କଥା । ପ୍ରଥମେ ଆମେ ନିର୍ବୋଧପଣରେ ଜୀବନ କଟାଇ ସମ୍ପତ୍ତି ଗୁଲିଗଲା ବୋଲି ଆଖିରୁ ଲୁହ ଗଡ଼ାଉଥିଲୁ; କିନ୍ତୁ ଈଶ୍ୱର ଏବେ ଆମକୁ ସତ୍ୟର ପଥ ଦେଖାଇଦେଇଅଛନ୍ତି । ନିଜକୁ ସାନ୍ତ୍ୱନା

ଦେବା ପାଇଁ ମୁଁ ଏହା କହୁ ନାହିଁ; ଆପଣମାନଙ୍କର ଉପକାର ପାଇଁ ମଧ୍ଯ କହୁଅଛୁ ।"

ଏତେବେଳ ପର୍ଯ୍ୟନ୍ତ ଫକୀର ଗମ୍ଭୀର ହୋଇ ବସି କେବଳ ଶୁଣୁଥିଲେ । ଶେଷରେ ସେ କହିଲେ, "ଇଲଆସର କଥା ଅକ୍ଷରେ ଅକ୍ଷରେ ସତ । ଧର୍ମଶାସ୍ତ୍ରରେ ଠିକ୍ ତାହାହିଁ ଲେଖାହୋଇଅଛି ।"

ଅତିଥିମାନେ ଆଉ ଉପହାସ କଲେ ନାହିଁ । ସେମାନଙ୍କର ହୃଦୟ ଗଭୀର ଚିନ୍ତାରେ ପୂରିଗଲା ।

—*—

# ନିର୍ବୋଧ ଆଇଭାନ

—୧—

ଗୋଟିଏ ରାଜ୍ୟରେ ଅତି ପୂର୍ବ କାଳରେ ଜଣେ ଧନୀ କୃଷକ ବାସ କରୁଥିଲା । ତାହାର ତିନୋଟି ପୁଅ ଥିଲେ—ସାଇମନ, ତରାସ ଓ ଆଇଭାନ । ସାଇମନ ଖୁବ ସାହସୀ ଯୋଦ୍ଧା, ଥିଲା, ତରାସ ଦେଖିବାକୁ ଯେପରି ମୋଟା ସେହିପରି ବଳବାନ୍ ଥିଲା; କିନ୍ତୁ ଆଇଭାନ ନିତାନ୍ତ ବୁଦ୍ଧିହୀନ ଥିଲା । ତେଣୁ ଲୋକେ ସେମାନଙ୍କୁ ବୀର ସାଇମନ୍, ବଳିଷ୍ଠ ତରାସ ଓ ନିର୍ବୋଧ ଆଇଭାନ ବୋଲି ଡ଼ାକୁଥିଲେ । ଏମାନଙ୍କ ଛଡ଼ା ତାର ଗୋଟିଏ ଝିଅ ଥିଲା, ତାର ନାମ ମାର୍ଥା । ମାର୍ଥା ମୂକ ଓ ବଧିର; ତେଣୁ ତାର ବିବାହ ହୋଇପାରି-ନଥିଲା । ବୀର ସାଇମନ ରାଜାଙ୍କ ସୈନ୍ୟଦଳରେ ଯୋଗ ଦେଇ ଯୁଦ୍ଧ କରିବାକୁ ଦୂରକୁ ଯାଇଥିଲା । ବଳିଷ୍ଠ ତରାସ ସହରକୁ ଯାଇ ଜଣେ ବଣିକ ସଙ୍ଗରେ ବ୍ୟବସାୟ କରୁଥିଲା । ନିର୍ବୋଧ ଆଇଭାନ ଓ ମାର୍ଥା ଘରେ ରହୁଥିଲେ । ଆଇଭାନ୍ ଦିନସାରା ବିଲରେ କାମ କରୁଥିଲା ।

ସାଇମନ ଯୁଦ୍ଧ ବିଭାଗରେ ଉନ୍ନତି କରି ରାଜାଙ୍କ ଠାରୁ ଖଣ୍ଡିଏ ଜମିଦାରୀ ପୁରସ୍କାର ପାଇଲା ଓ ଜଣେ ଧନୀ ମହିଳାଙ୍କୁ ବିବାହ କଲା । ସେ ଯଥେଷ୍ଟ ଦରମା ପାଉଥିଲା ଓ ଜମିଦାରୀଟି ମଧ୍ୟ ଛୋଟ ନ ଥିଲା । ତଥାପି ସେ ତାର ଖର୍ଚ୍ଚ ତୁଲାଇ ପାରୁ ନ ଥିଲା; କାରଣ ତାର ସ୍ତ୍ରୀ ନିତାନ୍ତ ଅପବ୍ୟୟୀ ଥିଲା । ତେଣୁ ସାଇମନ ଟଙ୍କା ପଇସା ପାଇଁ ଜମିଦାରୀକୁ ଗଲା । କିନ୍ତୁ ଜମିଦାରୀ ବୁଝୁଥିବା ମେନେଜର କହିଲା, "ଟଙ୍କା କାହୁଁ ଆସିବ ? ବଳଦ ନାହିଁ, ଲଙ୍ଗଳ ନାହିଁ, ଘୋଡ଼ା ନାହିଁ, କିଛି ନାହିଁ । ଆମେ ଏ ସବୁ ଯୋଗାଇ ଦେଲେ ଯାଇ ଜମିରୁ ଆୟ ହେବ ?"

ତହୁଁ ସାଇମନ ବାପା ପାଖକୁ ଯାଇ କହିଲା, "ବାପା, ତୁମର ଅନେକ ଧନସମ୍ପତ୍ତି ଅଛି; କିନ୍ତୁ ତୁମେ ମୋତେ କିଛି ଦେଇ ନାହଁ ।

ସମ୍ପତ୍ତିକୁ ବାଣ୍ଟିଦେଇ ଧନର ଭାଗରୁ ଭାଗେ ମୋତେ ଦିଅ । ତାହାହେଲେ ମୁଁ ଜମିଦାରଙ୍କର ଉତ୍ପାତ ଦୂରକରିପାରିବି ।"

ବୃଦ୍ଧ କହିଲା, "ତୁ ତ ଆମ୍ଭଙ୍କର ଘରକୁ କିଛି ଆଣି ନାହୁଁ । ଯାହା କିଛି ଆୟ ହୋଇଛି, ତା ଆଇଭାନ କରିଛି । ତୋତେ ଧନ ଭାଗରୁ ଭାଗେ ଦେଲେ ତା ପ୍ରତି ଅନ୍ୟାୟ ହେବ । ତାହା ଛଡ଼ା ଝିଅଟିଏ ମଧ୍ୟ ଅଛି ।"

ସାଇମନ ଏହା ଶୁଣି କହିଲା, "ଆଇଭାନ ନିତାନ୍ତ ବୋକା । ମାର୍ଥା ମଧ୍ୟ ବାହା ହେବ ନାହିଁ । ସେହିକେ ସେ ମୂକ ଓ ବଧିର । ତାର ବାହାହେବା ବୟସ ଗଲାଣି । ସେ ଦୁହିଁଙ୍କର ଟଙ୍କାପଇସା କି ଦରକାର ?"

ବୃଦ୍ଧ କହିଲା, "ଆଚ୍ଛା, ମୁଁ ଆଇଭାନକୁ ପଚାରି ବୁଝେଁ । ସେ କଅଣ କହୁଛି ?"

ଆଇଭାନକୁ ପଚାରିବାରୁ ସେ କହିଲା, "ହଉ, ସାଇମନ ଭାଇ ଯାହା କହୁଛି, ନେଉ ।"

ଏହାର ସାଇମନ ବାପସମ୍ପତ୍ତିରୁ ଗୋଟିଏ ଭାଗ ନେଇ ତା ଜମିଦାରଙ୍କୁ ଗଲା । କିଛିଦିନ ପରେ ପୁଣି ସେ ଯୁଦ୍ଧକୁ ଚାଲିଗଲା ।

ବଳିଷ୍ଠ ତରାସ ବ୍ୟବସାୟରେ ଅନେକ ଟଙ୍କା ଅର୍ଜିଲା । ସେ ମଧ୍ୟ ଜଣେ ବଣିକର ଝିଅକୁ ବିବାହ କଲା । ତଥାପି ତାର ଟଙ୍କା ଅଭାବ ହେଲା । ସେ ଆସି ବାପକୁ କହିଲା, "ବାପା, ମୋ ଭାଗ ମୋତେ ଦେଇପକାଅ ।

ତରାସକୁ ଗୋଟାଏ ଭାଗ ଦେବା ବୁଢ଼ାର ଇଚ୍ଛା ନଥିଲା । ସେ କହିଲା, "ତୁ କିଛିହେଲେ ଅର୍ଜନ କରି ଘରକୁ ଆଣିନାହୁଁ । ଘରେ ଯାହା କିଛି ଅଛି, ଯେ ସବୁ ଆଇଭାନର ଅର୍ଜିତ । ଆଇଭାନ କିମ୍ବା ମାର୍ଥାକୁ ଧନରୁ ବଞ୍ଚିତ କରିବା ଘୋର ଅନ୍ୟାୟ ହେବ ।"

ତରାସ କହିଲା, "ଆଇଭାନ ହେଉଛି ବୋକା, ତାର ଧନସମ୍ପତ୍ତିରେ ଦରକାର କଅଣ ? ସେ ବାହା ହୋଇପାରିବ ନାହିଁ । ତା ଭଳି ବୋକାକୁ କିଏ ଝିଅ ଦେବ ? ଆଉ ସେ ମୂକ ଓ ବଧିର ଝିଅର ବା ଟଙ୍କା ପଇସାରେ କି ଦରକାର ?" ସେ ଆଇଭାନକୁ କହିଲା, "ଅରେ ଆଇଭାନ, ଘରେ ଯେଉଁ ଶସ୍ୟ ଅଛି, ସେଥିରୁ ଅର୍ଦ୍ଧେ ମୋତେ ଦେ । ହାତହତିଆର ମୋର

ଲୋଡ଼ା ନାହିଁ । ଖାଲି ଘୋଡ଼ାଟାକୁ ମୁଁ ନେବି । ସେଇଟା ତୋର ହଳଜାମରେ ଲାଗିବ ନାହିଁ ।"

ଆଇଭାନ୍ ହସି ହସି କହିଲା, "ଯାହା ତୋର ଇଚ୍ଛା, ନେଇଯାଆ । ମୁଁ କାମ କରି ଆଉରି ଧନ ଅର୍ଜିପାରିବି ।"

ତାପରେ ଶୟତାନ ଗାଡ଼ିରେ ଲଦିଲା ଓ ଘୋଡ଼ା ସହିତ ସହରକୁ ଗଲା । ଆଇଭାନ ଆଗଭଳି ଜମି ଚଷି ବାପମାଆଙ୍କୁ ପୋଷିବାକୁ ଲାଗିଲା ।

## ୨

ସମ୍ପତ୍ତି ବାଣ୍ଟିବାରେ ଭାଇମାନଙ୍କ ଭିତରେ କଳି ଲାଗିଲା ନାହିଁ । ବୁଢ଼ାଭାଇଯାକ ଯାହା ଚାହିଁଲେ ଆଇଭାନ ତାହା ଦେଲା । ଏହା ଦେଖି ସଇତାନ ରାଗିଗଲା । ତାର ଇଚ୍ଛା, ଲୋକଙ୍କ ଭିତରେ କଳିଗୋଳ ଲାଗିଥାଉ । ଶାନ୍ତିରେ ଭାଇମାନେ ଭିନ୍ନ ହେବା ସେ ସହନ୍ତା କିପରି ?

ସଇତାନ ଭୂତମାନଙ୍କର ସରଦାର । ତା ଅଧୀନରେ ଅନେକ ଭୂତ ଥାଆନ୍ତି । ସେ ତିନୋଟି ଭୂତଙ୍କୁ ଡାକି କହିଲା, "ଏ ତିନି ଭାଇଙ୍କୁ ଦେଖ । ସେମାନେ ଆପଣା ଭିତରେ କଳିତକରାଳ କରିବା ଉଚିତଥିଲା; କିନ୍ତୁ ତା ନକରି ସେମାନେ ମିଳାମିଶି ଶାନ୍ତିରେ ଚଳୁଛନ୍ତି । ତେବେ ଆମେ ଥାଏଁ କାହିଁକି ? ତିନଙ୍କ ଭିତରେ ନିର୍ବୋଧ ଆଇଭାନ ସର୍ବନାଶ କରିଛି । ତୁମେ ତିନିହେଁ ଯାଇ ସେ ତିନି ଭାଇଙ୍କ କଥା ବୁଝ । ଏମିତି କାମ କରିବ, ଯେପରି କି ସେ ତିନି ଭାଇ ଆପଣା ଭିତରେ କଳିକଜିଆ କରି ଧ୍ୱଂସ ପାଆନ୍ତି । କଅଣ କହୁଛ, ଏ କାମକୁ ପାରିବ ତ ?"

ତିନିହେଁ ଯାକ କହିଉଠିଲେ, "ହଁ, ନିଶ୍ଚୟ କରିପାରିବୁ ।"

ସଇତାନ ପଚାରିଲା, "ତୁମେମାନେ କିପରି ସେମାନଙ୍କ ଭିତରେ କଳି ପୂରେଇବ ?"

ସେମାନେ ଉତ୍ତର କଲେ, "ସେଥିରେ ବିଶେଷ କଷ୍ଟ ହେବ ନାହିଁ । ପ୍ରଥମେ ଆମେ ତିନିଭାଇଙ୍କୁ ଏମିତି ଗରିବ କରିଦେବୁ ଯେ କାହାରିକୁ

ଖାଇବାକୁ ସୁଦ୍ଧା ମିଳିବ ନାହିଁ । ତେଣିକି ସେମାନେ ଆପଣା ଆପଣା ଭିତରେ କଳିକରିବେ ।"

ସଇତାନ କହିଲା, "ଭଲ ବୁଦ୍ଧି ବାହାର କରିଛ । ତୁମକୁ କାମ ଜଣାଅଛି । ଏବେ ଯାଅ, ତିନି ଭାଇଙ୍କ ଭିତରେ କଳିତକରାଳ ନଲଗାଇ ଫେରିଲେ ମୁଁ ତୁମ ଦେହରୁ ଚମଡ଼ା ଉତାରିଦେବି ।"

ଭୂତମାନେ ଗୋଟିଏ ବଣରେ ବସି କଅଣ କରିବେ ବିଚ୍ଚର କଲେ । ପ୍ରତ୍ୟେକେ ସବୁଠାରୁ ସହଜ କାମ ଚାହୁଁଥିବାରୁ ସେମାନଙ୍କ ଭିତରେ ଅନେକ ବେଳଯାଏ ବାଦବିବାଦ ଚାଲିଲା । ଶେଷରେ ଗୋଟିଏ ଗୋଟିଏ ଭୂତ ଗୋଟିଏ ଲେଖାଏଁ ଭାଇର ଭାର ନେବା ସ୍ଥିରହେଲା ଓ କିଏ କାହା ଭାର ନେବ ତାହା ଧର୍ମଗୁଳା ପକାଇ ସ୍ଥିରକରାଗଲା । ଅଧିକନ୍ତୁ ମଧ୍ୟ ସ୍ଥିର ହେଲା ଯେ କେହି ତାର କାମ ଆଗ ଶେଷ କରିଦେଲେ ସେ ଆସି ଅନ୍ୟ ଦୁହିଁଙ୍କୁ ସାହାଯ୍ୟ କରିବ । ଗୋଟିଏ ନିର୍ଦ୍ଦିଷ୍ଟ ଦିନ ସମସ୍ତେ ସେହିଠାରେ ଉପସ୍ଥିତ ହୋଇ, କିଏ କଅଣ କଲା, କାହାର ସାହାଯ୍ୟ ଦରକାର ଏ ବିଷୟ ଆଲୋଚନା କରିବାର କଥା ହେଲା ।

ନିର୍ଦ୍ଧାରିତ ଦିନ ତିନିଭୂତଯାକ ପୁଣି ସେହିଠାରେ ଏକଜ ହେଲେ । କିଏ କଅଣ କରିଛି ତାହା ବର୍ଣ୍ଣନା କଲେ । ପ୍ରଥମ ଭୂତ ସାଇମନର ଭାର ନେଇଥିଲା । ସେ କହିଲା, "ମୋ କାମ ଭଲଭାବରେ ଚାଲିଛି । କାଲି ଧୀର ସାଇମନ ତା ବାପାଘରକୁ ଫେରିଯିବ ।"

ଅନ୍ୟ ଦୁହେଁ ପଚ୍ଚରିଲେ, "ତୁ କପରି ଏହା କରାଇପାରିଲୁ ?"

ସେ ଉତ୍ତର କଲା, "ମୁଁ ସାଇମନ ମୁଣ୍ଡରେ ଏକ ଦୁର୍ବୁଦ୍ଧି ପୂରାଇଲି । ସେ ସମସ୍ତ ପୃଥିବୀ ଜୟକରିବ ବୋଲି ରଜାଙ୍କୁ କହିଲା । ତହୁଁ ରଜା ତାକୁ ସୈନ୍ୟ ଦେଇ ଭାରତବର୍ଷ ଜୟ କରିବାକୁ ପଠାଇଦେଲେ । ଦୁଇ ପକ୍ଷ ଯୁଦ୍ଧପାଇଁ ଠିଆହେଲେ । ମୁଁ ସାଇମନର ସୈନ୍ୟମାନଙ୍କ ବାରୁଦକୁ ଓଦା କରିଦେଲି । ଭାରତର ସୈନ୍ୟମାନଙ୍କ ଭିତରେ ମୁଁ ଗୁଡ଼ାଏ କୃତ୍ରିମ ସୈନ୍ୟ ପୂରାଇଦେଲି । ତେଣୁ ଭାରତବର୍ଷର ସୈନ୍ୟସଂଖ୍ୟା ଖୁବ ବଢ଼ିଗଲା । ସେମାନଙ୍କ ସଂଖ୍ୟା ଦେଖି ସାଇମନର ସୈନ୍ୟମାନେ ଭୟକରିଗଲେ । ସାଇମନ ତାର ସୈନ୍ୟମାନଙ୍କୁ କମାଣ ଚଳାଇବାକୁ କହିଲା । କିନ୍ତୁ

ବାରୁଦ ଓଦାହୋଇଥିବାରୁ ଗୋଟିଏ ହେଲେ କମାଣ ଫୁଟିଲା ନାହିଁ । ତାର ସୈନ୍ୟମାନେ ମେଣ୍ଢାପରି ଯୁଦ୍ଧଭୂମିରୁ ପଳାଇଲେ; ଭାରତବର୍ଷର ସୈନ୍ୟମାନେ ସେମାନଙ୍କ ପଛେ ପଛେ ଗୋଡ଼ାଇ ସେମାନଙ୍କୁ ହତ୍ୟା-କଲେ । ରାଜା ସାଇମନକୁ ଅପମାନ ଦେଇ ତାର ଜମିଦାରୀ ଛଡ଼ାଇ ନେଇଛନ୍ତି ଓ କାଲି ତାକୁ ପ୍ରାଣଦଣ୍ଡ ଦିଆଯିବ ବୋଲି ହୁକୁମ ଦେଇଛନ୍ତି । ସେ ବନ୍ଦୀଶାଳାରେ ଅଛି । ଆଜି ମୁଁ ତାକୁ ବନ୍ଦୀଶାଳାରୁ ବାହାର କରାଇଦେବି । ସେ ତା ବାପ ପାଖକୁ ପଳାଇଯିବ । କାଲିକୁ ମୋର କାମ ସରିଯିବ । ତେଣିକି ମୁଁ ତୁମ ଦୁହିଁଙ୍କୁ ସାହାଯ୍ୟ କରିପାରିବି ।"

ଦ୍ୱିତୀୟ ଭୂତ ତାରାସର ଦାୟିତ୍ୱ ନେଇଥିଲା । ସେ ତାର କାମ ବର୍ଣ୍ଣନା କରି କହିଲା, "ଅନ୍ୟ କାହାରି ସାହାଯ୍ୟ ନେବା ମୋର ଦରକାର ନାହିଁ । ମୋ କାମ ବେଶ୍ ଚାଲିଛି । ତାରାସ ଆଉ ସପ୍ତାହେ ସମ୍ଭାଳି ପାରିବାର ଆଶା ନାହିଁ । ମୁଁ ପ୍ରଥମେ ତାକୁ ଆହୁରି ମୋଟା କରାଇଦେଲି; ଯାହା କିଛି ଦେଖିଲା ତାକୁ କିଣିବାପାଇଁ ତାର ଲୋଭ ହେଲା । ଏଥି ମଧ୍ୟରେ ସେ ନିଜର ଜଣି ସବୁ ଟଙ୍କା ଉଡ଼ାଇଦେଲାଣି । ଏବେ ସେ ଅନ୍ୟଠାରୁ କରଜ କରିବାରେ ଲାଗିଛି । ସେ କେବେହେଲେ କରଜ ଶୁଝି ପାରିବ ନାହିଁ । ହପ୍ତାକ ପରେ ମହାଜନମାନେ ସେମାନଙ୍କ ଟଙ୍କା ଦାବି କରିବେ । ଏଥି ମଧ୍ୟରେ ତାର ଯାହାକିଛି ମାଲମତ୍ତା ଅଛି, ତାକୁ ମୁଁ ନଷ୍ଟ କରିଦେବି । ସେ ନିରୁପାୟ ହୋଇ ବାପା ପାଖକୁ ଯିବ ।"

ତୃତୀୟ ଭୂତକୁ ପଚରାଗଲା, "ତୋ କାମ କେତେଦୂର ଯାଇଛି ?"

ସେ ଉତ୍ତରକଲା, "ମୁଁ କିଛି କରିଛି ବୋଲି କହିପାରିବି ନାହିଁ । ମୁଁ ପ୍ରଥମେ ଆଇଭାନର ପେଟରେ ରୋଗ ହେବାପାଇଁ ତା ପିଇବା ପାଣିରେ ଛେପ ପକାଇଦେଲି । ତାପରେ ତା ବିଲକୁ ଯାଇ ଛେଚ ପଥରପରି ଟାଣ କରିଦେଲି । ମୁଁ ଭାବିଥିଲି, ଏଭଳି ପଥୁରିଆ ମାଟିକୁ ସେ ହଳ କରିପାରିବ ନାହିଁ । କିନ୍ତୁ ପେଟ ଟାଣି ହେଉଥିଲେ ସୁଦ୍ଧା ସେ ହଳ କରିବାକୁ ଗଲା । ପଥୁରିଆ ମାଟିକୁ ମଧ୍ୟ ସେ ହଳ କରିବାକୁ ଲାଗିଲା । ତହୁଁ ମୁଁ ତାର ଲଙ୍ଗଳକୁ ଭାଙ୍ଗି ଦେଲି । କିନ୍ତୁ ସେ ଘରକୁ ଯାଇ ଆଉ ଗୋଟାଏ ଲଙ୍ଗଳ ଆଣି ହଳ କରିବାକୁ ଲାଗିଲା । ମୁଁ ଗୋଟାଏ କୌଶଳ କଲି । ମୁଁ

ମାଟିଭିତରେ ରହି ତା ଲଙ୍ଗଳର ଲୁହାକୁ ଧରିରହିଲା । ଲଙ୍ଗଳ ନ ଘୁଞ୍ଚିବାରୁ ସେ ଜୋର୍‌ରେ ମାଡ଼ିବସି ଘୋଡ଼ାକୁ ଅଡ଼େଇଲା । ଶେଷକୁ ଲଙ୍ଗଳ ଛୁରାରେ ମୋ ହାତ କଟିଗଲା । ସେ ପ୍ରାୟ ଜଅଁଟାଯାକ ହଳ କରି ସାରିଲଣି; ସାମାନ୍ୟ ଅଳ୍ପ ବାକି ଅଛି । ଭାଇମାନେ, ମୋତେ ସାହାଯ୍ୟ କର । ଆଇଭାନକୁ ଜବତ ନକଲେ ଆମର ସବୁ ଚେଷ୍ଟା ବିଫଳ ହେବ । ସେ ହଳ ଚଷି ଫସଲ ଆମଦାନି କଲେ ଅନ୍ୟ ଦୁଇଭାଇଙ୍କୁ ଖାଇବାକୁ ଦେବ ।"

ପ୍ରଥମ ଭୂତ କହିଲା, "କାଲି ମୁଁ ସାଇମନ କଥା ଶେଷ କରିଦେଇ ତୋତେ ସାହାଯ୍ୟ କରିବାକୁ ଆସିବି ।"

## ୩

ସାମାନ୍ୟ ଅଳ୍ପ ଛଡ଼ା ଆଉ ସବୁ ଜମି ଆଇଭାନ ହଳ କରି ସାରିଥିଲା । ସେତକ ଶେଷ କରିବାକୁ ସେ ହଳ ଦେଇ ଆସିଲା । ତା'ର ପେଟ ଟାଣୁଥାଏ; କିନ୍ତୁ ସେ ପ୍ରାଣପଣେ ହଳ କରୁଥାଏ । ଭୂତ ମାଟି ଭିତରେ ଥାଇ ଲଙ୍ଗଳ ଲୁହାକୁ ଖୁବ୍ ଜୋର୍‌ରେ ଟାଣିରହିଲା । ଆଇଭାନ ମନେକଲା, ଗୋଟାଏ ଚେର ଶିଖରେ ଲଙ୍ଗଳ ଲୁହାଟା ଲାଗି ଯାଉଛି । କିନ୍ତୁ ଏଠାରେ କୌଣସିଠାରେ ତ ଚେରଶିଅ ନଥିଲା, ଆସିଲା କାହୁଁ ? ସେ ଆଶ୍ଚର୍ଯ୍ୟ ହୋଇ ଶିଅରରେ ହାତ ପୂରାଇଲା । ଗୋଟାଏ କଅଁଳ ଜିନିଷ ତା ହାତରେ ବାଜିଲା । ସେ ତାକୁ ଟାଣିଆଣି ଦେଖେତ ଗୋଟାଏ ଜୀଅନ୍ତା ଜୀବପରି ଦିଶୁଛି । ସେ ଜାଣିପାରିଲା ଯେ ଏଇଟା ଗୋଟାଏ ଭୂତ । ତାକୁ ଲଙ୍ଗଳରେ ପିଟିବାକୁ ବସିଲାରୁ ଭୂତ ବିକଳ ହୋଇ କହିଲା, "ମୋତେ ମାର ନାହିଁ । ଯାହା କରିବାକୁ କହିବ ମୁଁ ତାହା କରିବି ।"

ଆଇଭାନ ପଚାରିଲେ—ତୁ କଅଣ କରିପାରିବୁ ?

ଭୂତ—ମୋତେ ଯାହା କରିବାକୁ ଆଦେଶ ଦେବ ତାହା କରିବି ।

ଆଇଭାନ—ମୋର ପେଟକୁ ମାରୁଛି । ମୋ ପେଟମଡ଼ା ଭଲ କରିଦେଇପାରିବୁ ?

ଭୂତ—ନିଶ୍ଚୟ ।

ଆଇଭାନ—ତେବେ ମୋ ପେଟ ଭଲକରଦେ ।

ଭୂତ ଲଙ୍ଗଳ ଶିଆରରେ ପଶି ଭୂଇଁତଳୁ ତିନୋଟି ଚେର ଆଣିଲା । ତାହା ଆଇଭାନକୁ ଦେଇ କହିଲା, "ଏଥିରୁ ଗୋଟିଏ ଚେର ଖାଇଦେଲେ ଖାଲି ପେଟମରା କାହିଁକି, ଯେ କୌଣସି ରୋଗ ଭଲହୋଇଯିବ ।"

ଆଇଭାନ ଗୋଟିଏ ଚେର ଖାଇଲାମାତ୍ରେ ତାର ପେଟମରା ଭଲ ହୋଇଗଲା । ତହୁଁ ଭୂତ ହାତଯୋଡ଼ି କହିଲା, "ଏଥର ମୋତେ ଛାଡ଼ିଦିଅ । ମୁଁ ଭୂଇଁ ଭିତରକୁ ଚାଲିଯିବି; ଆଉ କେବେ ଆସିବି ନାହିଁ ।"

ଆଇଭାନ କହିଲା, "ଆଚ୍ଛା, ତୁ ଯାଆ, ଈଶ୍ୱର ତୋର ମଙ୍ଗଳ କରନ୍ତୁ ।"

ଈଶ୍ୱରଙ୍କ ନାମ ଶୁଣିଲାମାତ୍ରେ ଭୂତ ଭୂଇଁ ଭିତରକୁ ପଶିଗଲା । ସେ ଯେଉଁବାଟେ ପଶିଲା, ସେହି ଗାତଟି ଛଡ଼ା ଭୂତର କିଛି ଚିହ୍ନ ଦେଖାଗଲା ନାହିଁ ।

ଆଇଭାନ ଅନ୍ୟ ଦୁଇଟି ଚେର ତା ଟୋପି ଭିତରେ ରଖିଦେଇ ହଳ କରିବାକୁ ଲାଗିଲା । ସବୁ ଜମି ଦୁଇଥର ହଳ କରିସାରି ସେ ଘରକୁ ଗଲା । ହଳରୁ ଘୋଡ଼ାଙ୍କୁ ଫିଟାଇଦେଇ ସେ ଘର ଭିତରକୁ ପଶିଯାଇ ଦେଖିଲା ଯେ ବଡ଼ଭାଇ ସାଇମନ ଓ ତାର ସ୍ତ୍ରୀ ବସି ଖାଉଛନ୍ତି । ଏଥି ମଧ୍ୟରେ ରାଜା ସାଇମନର ଜମିଦାରୀ ଛଡ଼ାଇନେଇଥିଲେ ଓ ବହୁ କଷ୍ଟରେ ସେ ଜେଲଖାନାରୁ ପଳାଇଆସିଥିଲା । ଏବେ ସେ ବାପ ପାଖରେ ରହିବାକୁ ଆସିଛି ।

ଆଇଭାନକୁ ଦେଖିଲାକ୍ଷଣି ସାଇମନ କହିଲା, "ଆମେ ତୋ ସଙ୍ଗରେ ରହିବା ପାଇଁ ଆସିଛୁ । ତୁ ଆମ ଦୁହିଁଙ୍କୁ ଚଳାଉଥା । ମୁଁ ଆଉ କେଉଁଠି ଚାକିରି ପାଇଲେ ଆମେ ଚାଲିଯିବୁ ।"

ଆଇଭାନ ଆନନ୍ଦରେ କହିଲା, "ଭଲ କଥା । ତୁମେ ଦୁହେଁ ଆମ ପାଖରେ ରହିଥାଅ ।"

ଏହା କହି ଆଇଭାନ ଭାଇଭାଉଜଙ୍କ ପାଖରେ ବସିଗଲା । ସାଇମନର ସ୍ତ୍ରୀ ଆଇଭାନର ପୋଷାକର ଦୁର୍ଗନ୍ଧ ସହି ପାରିଲା ନାହିଁ । ସେ ସ୍ୱାମୀକୁ କହିଲା, "ଏଭଳି ମଇଳା ଚଷା ସଙ୍ଗରେ ବସି ମୁଁ ଖାଇ ପାରିବି ନାହିଁ ।

ତହୁଁ ସାଇମନ କହିଲା, "ଆରେ ଆଇଭାନ, ତୋ ଭାଉଜ ତୋ ପାଖରେ ବସି ଖାଇପାରିବ ନାହିଁ ବୋଲି କହୁଛି । ତୋ ଦେହର ଗନ୍ଧରେ ସେ ରହିପାରୁ ନାହିଁ । ତୁ ବାହାରେ ଖାଇବୁ ଯାଆ ।"

ଆଇଭାନ ବାହାରକୁ ଚାଲିଗଲା । ଚାଲିବେଳେ କହିଲା, "ହଉ, ମୁଁ ରାତିଟା ବାହାରେ କଟାଇଦେବି । ଘୋଡାଟାର ଖାଇବା ପିଇବା କଥା ବୁଝିବାକୁ ହେବ ।"

# ୪

ଯେଉଁ ଭୂତ ସାଇମନର ଭାର ନେଇଥିଲା, ସେ ଏହିପରି ନିଜ କାମସାରି ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିଲା । ସେ ଭାବିଥିଲା, ଆଇଭାନର ଭାର ନେଇଥିବା ଭୂତ ସେଠାରେ ଥିବ ଓ ତାକୁ ସେ ସାହାଯ୍ୟ କରି ଆଇଭାନକୁ ବଶ କରିବ । କିନ୍ତୁ ଦେଖେ ତ ସେଠାରେ କେବଳ ଗୋଟିଏ ଗାତ ରହିଛି ।

ସେ ଭାବିଲା, "ମୋର ସାଥି ନିଶ୍ଚୟ କୌଣସି ବିପଦରେ ପଡ଼ିଛି । ମୁଁ ତା କାମ କରିବା ଦରକାର । ଜଅଁଳଟା ହିଲା ହୋଇଯାଉଛି । ଆଇଭାନ ନିଶ୍ଚୟ ଏଠାକୁ ଆସିବ । ସେତିକିବେଳେ ତାକୁ ବଶ କରିପାରିବ ।"

ସେ ଜଅଁଳଯାକ ପାଣିରେ ବୁଡାଇଦେଲା । ସେଥିରେ ଯେତେ ଘାସ ଥିଲା, ସବୁ କାଦୁଅରେ ବୁଡ଼ିଗଲା । ସକାଳକୁ ଆଇଭାନ ଦାଆ ଘେନି ଘାସ କାଟିବାକୁ ଆସିଲା । ସେ ଦାଆକୁ ପକେଇ ଘାସ କାଟିବାକୁ ଆରମ୍ଭ କଲା; କିନ୍ତୁ ପୁଳାଏ ଦୁଇପୁଳା ନ କାଟୁଣୁ ଦାଆଟା ବଙ୍କା ହୋଇଗଲା; ଦାନ୍ତ ମରିଗଲା । ଦାଆକୁ ସିଧା କରି ଦାନ୍ତ କରିବା ପାଇଁ ଆଇଭାନ ଅନେକ ଚେଷ୍ଟା କରି ପାରିଲା ନାହିଁ । ସେ ଭାବିଲା, "ନା, ଏମିତି ହେବ ନାହିଁ । ଦାଆକୁ ସିଧା କରିବାପାଇଁ ଗୋଟାଏ ଟାଣ ହତିଆର ଦରକାର । ଯାଏଁ, ଘରୁ ଗୋଟାଏ କିଛି ହତିଆର ଆଣିବି; ଆହୁରି ମଧ୍ୟ କିଛି ଦିନ ପାଇଁ ରୁଟି ଘେନି ଆସିବି । ତାହାହେଲେ କିଛି ଦିନ ଏଇଠାରେ ରହି ଘାସକଟା କାମ ଶେଷକରି ଘରକୁ ଫେରିବି ।"

ଭୂତ ଅଇଭାନର ମନକଥା ଜାଣିପାରି ଭାବିଲା, "ଏ ଟୋକାକୁ ଆୟତ୍ତ କରିବା ସହଜ ନୁହେଁ । ଏ ଉପାୟରେ ତାକୁ ହାତ କରି ହେବ ନାହିଁ । ଅନ୍ୟ କିଛି କୌଶଳ କରିବାକୁ ହେବ ।"

ଆଇଭାନ ଘରୁ ହତିଆର ନେଇ ଆସିଲା । ଦାଆକୁ ଭଲକରି ପଜେଇ ପୁଣି ଘାସ କାଟିବାକୁ ଲାଗିଲା । ଭୂତ ଘାସ ଭିତରେ ଲୁଚି ରହି ଦାଅକୁ ମାଡ ଦେଉଥାଏ । ତେଣୁ ଘାସ କାଟିବାରେ ଆଇଭାନକୁ ବିଶେଷ ପରିଶ୍ରମ କରିବାକୁ ପଡୁଥାଏ । ଯାହାହେଉ ଆଇଭାନ ଏବେ ଟାଲୁଆ ସନ୍ତସନ୍ତିଆ ଜାଗା ଛଡ଼ା ସମସ୍ତ ପଡ଼ିଆର ଘାସ କାଟି ପକାଇଲା ! ଭୂତ ବିଚାରିଲା, ଆଇଭାନକୁ ଜବତ କରିବା ଦରକାର । ଏ ଜାଗାରୁ ସେ ଯେପରି ଘାସ କାଟି ନ ପାରିବ, ତା'ର ଉପାୟ କରିବ ।" ଏହିପରି ଭାବି ସେ ସନ୍ତସନ୍ତିଆ ଜାଗାରେ ଲୁଚିରହିଲା ।

ଆଇଭାନ ସେଠାରେ ଘାସ କାଟିବାକୁ ଆରମ୍ଭ କଲା । ଭୂତ ତା'ର ଦାଆକୁ ଧରିବାରୁ ସେ ସହଜେ ଘାସ କାଟି ପାରିଲା ନାହିଁ । ଆଇଭାନ୍ ଖୁବ୍ ଜୋର୍‌ରେ ଦାଆ ଚଳାଇବାରୁ ଭୂତ ସମ୍ଭାଳି ନ ପାରି ଗୋଟିଏ ବୁଦା ଭିତରେ ଲୁଚିଗଲା । ଆଇଭାନ ବୁଦା ସହିତ ଘାସ କାଟିବାରୁ ଭୂତର ଲାଞ୍ଜଟି କଟିଗଲା । ଘାସକୁ ମୁଣ୍ଡେଇ ଆଇଭାନ ଘରକୁ ନେଲା ଓ ଘାସ ଶୁଖାଇବା ପାଇଁ ମାଇଁକୁ କହି ପୁଣି ଦାଆ ଧରି ଗହମ କାଟିବା ପାଇଁ କିଆରୀକୁ ଆସିଲା ।

ଏଥି ମଧ୍ୟରେ ଭୂତ ଲାଞ୍ଜରୁ ଖଣ୍ଡେ ହରାଇ ମଧ୍ୟ ଗହମ କିଆରୀରେ ଲୁଚି ରହିଥିଲା । ସେ ଗହମ କଟାରେ ବାଧା ଦେଲା । ଆଇଭାନ ଘରକୁ ଯାଇ ଗୋଟାଏ ବଡ଼ ଦାଆ ଆଣିଲା ଓ କଠିନ ପରିଶ୍ରମ କରି ସବୁଯାକ ଗହମ କାଟିପକାଇଲା ।

ଗହମ କାଟିସାରି ସେ ବିଚାରିଲା, "ଏଥର ଯଅ କାଟିବି ।"

ଭୂତ ଭାବିଲା, "ଗହମ କାଟିବାରେ ଆଇଭାନ ମୋତେ ବଳିଗଲା । କିନ୍ତୁ ଯଅ କାଟିଲାବେଳେ ମୁଁ ତାକୁ ହଟାଇ ଦେବି । କାଲି ସକାଳୁ ସେ କାଟିବାକୁ ଆସିବ । ମୁଁ ଆଗରୁ ଯଅ କିଆରୀରେ ଲୁଚିରହିଥିବି ।"

ଭୂତ ସକାଳୁ ଯାଇ ଦେଖିଲା, ଆଇଭାନ ରାତସାରା କାମ କରି ସବୁ ଯଅ କାଟି ଜମାକରିସାରିଛି । ଭୂତ ମନରେ ଖୁବ୍ ରାଗ । ହେଲା ସେ ଚିନ୍ତା କଲା, "ଏ ନିର୍ବୋଧ ଆଇଭାନ ମୋତେ ବହୁତ ଅପମାନ ଦେଲାଣି । ମୋ ଦେହସାକ ତା'ର ଦାଆରେ କାଟି ଖଣ୍ଡିଆ ହୋଇଗଲାଣି । ରାତିରେ ସୁଦ୍ଧା ନ ଶୋଇ ସେ କାମ କରୁଛି । ମୁଁ ଏବେ ତା ଯଅ ଗଦାରେ ପଶି ତାକୁ ସଢ଼େଇ ଦେବି ।"

ଭୂତ ଯଅ ଗଦାରେ ପଶି ତାକୁ ଗରମ କରିବାକୁ ଲାଗିଲା । ଯଅ ସଢିବାକୁ ଆରମ୍ଭକଲା ଓ ତା ଭିତରେ ଭୂତ ଶୋଇରହିଲା । ଆଇଭାନ ଗାଡ଼ିରେ ଘୋଡାକୁ ଯୋଚି ଭଉଣୀ ସହିତ ଯଅ ଆଣିବାକୁ ଗଲା । ସେ ଝୁଣ୍ଟୁଣିରେ ଯଅ ବିଡାକୁ ଗୋଟି ଗୋଟି କରି ଟେକି ଆଣି ଗାଡ଼ି ଉପରେ ରଖିଲା । ଝୁଣ୍ଟୁଣି ଅଗରେ ଥିବା ଗୋଟିଆ ଲୁହାରେ ଭୂତ ଲାଖିଗଲା । ଆଇଭାନ ଦେଖିଲା, ଯଅ କଳେଇ ସାଥିରେ ଗୋଟାଏ ଭୂତ । ତାର ଲାଞ୍ଜ କଟିଯାଇଛି, ଦେହ ଖଣ୍ଡିଆ । ଝୁଣ୍ଟୁଣି ଅଗ ତାର ପିଠିରେ ପଶିଯାଇଛି ।

ଭୂତ ପଳାଇବା ପାଇଁ ଛଟପଟ ହେଲା । ଆଇଭାନ ତାକୁ ଦେଖି କହିଲା, "କିରେ ବଦମାସ୍, ତୁ ପୁଣି ଏଠାକୁ ଆସିଛୁ ?"

ଭୂତ କହିଲା, "ମୁଁ ଆଉ ଗୋଟାଏ ଭୂତ । ପ୍ରଥମ ଭୂତ ହେଉଛି ମୋର ଭାଇ । ମୁଁ ତୁମ ଭାଇ ସାଇମନ ପାଖରେ ଥିଲି । ଏବେ ଏଠାକୁ ଆସିଛି ।"

ଆଇଭାନ କହିଲା, "ତୁ ଯିଏ ହୋଇଥାଅ, ତୋ ଭାଇର ଯେଉଁ ଦଶା ହୋଇଛି ତୋର ମଧ୍ୟ ତାହା ହିଁ ହେବ ।"

ଏହା କହି ସେ ଭୂତକୁ ଗାଡ଼ି ଦେହରେ ପିଟିବାକୁ ବାହାରିଲା । ତହୁଁ ଭୂତ ଭୟପାଇ କହିଲା, "ମୋତେ ଏଥର ଛାଡ଼ି ଦିଅ । ମୋତେ ଯେଉଁ କାମ କରିବାକୁ କହିବ, ମୁଁ ତାହା କରିବ ।"

"ତୁ କି କାମ କରି ପାରିବୁ ?" ଆଇଭାନ ପଚାରିଲା ।

ଭୂତ ଉତ୍ତରକଲା, "କୌଣସି କାମ ମୋ ପକ୍ଷରେ ଅସାଧ୍ୟ ନୁହେଁ । ଯେ କୌଣସି ପଦାର୍ଥରେ ମୁଁ ସୈନ୍ୟ ତିଆରିକରିପାରିବ ।"

ଆଇଭାନ—ସୈନ୍ୟ ମୋର କେଉଁ କାମରେ ଲାଗିବ ?

ଭୂତ—ତୁମେ ଯେଉଁ କାମରେ ଲଗାଇବ ସୈନ୍ୟ ସେକାମ କରିବେ ।

ଅଇଭାନ—ସୈନ୍ୟମାନେ କଅଣ ଗୀତ ଗାଇପାରିବେ ?

ଭୂତ—ନିଶ୍ଚୟ, ତୁମେ ହୁକୁମ ଦେଲେ ସେମାନେ ଗୀତ ଗାଇବେ ।

ଅଇଭାନ—ଆଚ୍ଛା, ତାହାହେଲେ ମୋ ପାଇଁ କେତୋଟି ସୈନ୍ୟ କରିଦେ ।

ଭୂତ—ଗୋଟିଏ ଗହମ କଳେଇ ସିଧା କରି ଭୂମି ଉପରେ ରଖି ଦେଇ କୁହ—

ଗମ ଶୀଷାରେ ଗହମ ଶୀଷା
ଆଦେଶ ମୋହର ଯେନ
ହୋଇଯାଅ ଏବେ ମୋହର ଆଗରେ
ଗୋଟିଏ ଗୋଟିଏ ସୈନ୍ୟ ।

ଅଇଭାନ ଗୋଟିଏ ଗହମ କଳେଇ ଉଠେଇନେଇ ରଖିଦେଲା ଓ ଭୂତ ଯାହା କହିଥିଲା, ତାହା କହିଲା । ସୁଡୁ ସୁଡୁ ପ୍ରତି ଗହମ ଶୀଷା ଜଣେ ଲେଖାଏଁ ସୈନ୍ୟ ହୋଇଗଲେ । ଆଗ ସୈନ୍ୟମାନେ ବାଦ୍ୟ ବଜାଉଥାନ୍ତି । ସେମାନଙ୍କ ପଛେ ପଛେ ଅସ୍ତ୍ରଧାରୀ ସୈନ୍ୟ ।

ଏମାନଙ୍କୁ ଦେଖି ଅଇଭାନ ଆଶ୍ଚର୍ଯ୍ୟ ହୋଇଗଲା । ଭୂତ କହିଲା, "ଏବେ ମୋତେ ଛାଡ଼ିଦିଅ; ମୁଁ ଯାଏଁ ।"

ଅଇଭାନ କହିଲା, "ନା, ତା ହେବ ନାହିଁ । ମୋ ଗହମ ଶୀଷା-ଗୁଡ଼ାକ ସୈନ୍ୟ ହୋଇଯାଇଛନ୍ତି । ଏତେ ଗହମ ନଷ୍ଟ ହେଲେ ମୁଁ ଚଳିବି କପରି ? ଏ ସୈନ୍ୟମାନଙ୍କୁ ପୁଣି କିପରି ଗହମ ଶୀଷା କରିହେବ, ସେ କଥା ନକହିଲେ ତତେ ଛାଡ଼ିବି ନାହିଁ ।"

ଭୂତ କହିଲା, "ସେ କଥା ମଧ୍ୟ କଷ୍ଟ ନୁହେଁ । ତୁମେ କହିବ :—

ସୈନିକ ବୀର ହେ ସୈନିକ ବୀର
ନିଜ ନିଜ ପୂର୍ବ ରୂପକୁ ଧର ।

ଅଇଭାନ ସେହିପରି କହିଲାକ୍ଷଣି ସୈନ୍ୟମାନେ କୁଆଡ଼େ ଉଭେଇ ଗଲେ ଓ ସେମାନଙ୍କ ସ୍ଥାନରେ ଗହମ କଳେଇ ଦେଖାଗଲା ।

ଭୂତ କହିଲା, "ଏବେ ମୋତେ ଛାଡ଼ିଦିଅ ।"

ଅଇଭାନ୍ ଭୂତକୁ ଛୁଟି ଦେଇ କହିଲା, "ହେଉ ଯାଅ, ଈଶ୍ୱର ତୋର ମଙ୍ଗଳ କରନ୍ତୁ ।"

ଈଶ୍ୱରଙ୍କର ନାଁ ଶୁଣିଲାକ୍ଷଣି ଭୂତ ଡେଇଁପଡ଼ି ଭୂଇଁ ଭିତରେ ପଶି-ଗଲା । ସେ ଆଉ ଦେଖାଗଲା ନାହିଁ; କେବଳ ସେ ଯେଉଁବାଟେ ଭୂଇଁରେ ପଶିଥିଲା, ସେଠାରେ ଗୋଟିଏ ଗାତ ରହିଗଲା ।

ଆଇଭାନ ଘରକୁ ଆସି ଦେଖିଲା, ମଝିଆଁ ଭାଇ ତରାସ ଓ ତାର ସ୍ତ୍ରୀ ଖାଇବସିଛନ୍ତି ।

ତରାସ ତାର ମହାଜନମାନଙ୍କୁ ଟଙ୍କା ଶୁଝି ପାରି ନ ଥିଲା । ସେମାନଙ୍କ ହାତରୁ ରକ୍ଷା ପାଇବା ପାଇଁ ସେ ବାପ ପାଖକୁ ପଳାଇ ଆସି-ଥିଲା । ଅଇଭାନକୁ ଦେଖି ସେ କହିଲା, "ମୁଁ ପୁଣି କିଛି ଗୋଟାଏ ବ୍ୟବସାୟ କରିବାଯାଏ ଆମ ଦୁହିଁଙ୍କୁ ତୁ ପାଖରେ ରଖି ଚଳାଉଥାଅ ।"

ଆଇଭାନ କହିଲା, "ଭାଇ, ତୁମେ ଯେତେ ଦିନ ଯାଏ ଇଚ୍ଛା କରୁଛ ଏଠାରେ ରହିଥାଅ ।"

ସେ ଦେହରୁ କୁର୍ତ୍ତାଟା କାଢ଼ି ଭାଇଭାଉଜଙ୍କ ପାଖରେ ଖାଇବାକୁ ବସିଗଲା । ଭାଉଜ କହିଲା, "କି ଝାଳୁଆ ଗନ୍ଧ ! ଏମିତି ଗୋଟାଏ ଅନାଡ଼ି ପାଖରେ ବସି ମୁଁ ଖାଇ ପାରିବି ନାହିଁ ।

ତରାସ କହିଲା, "ଅରେ ଅଇଭାନ, ତୋ ଦେହ ଝାଳରେ ଗନ୍ଧ କରୁଛି । ତୁ ବାହାରେ ବସି ଖାଅ ।"

ଅଇଭାନ ଖଣ୍ଡେ ରୁଟି ଧରି ଅଗଣାକୁ ଚାଲିଗଲା । ଚାଲୁବେଳେ କହିଲା, "ହଉ, ମୁଁ ବାହାରେ ଖାଇବି । ମୋର ବି ଘୋଡ଼ା ଚରାଇ ନେବା ବେଳ ହୋଇଗଲାଣି ।"



ଯେଉଁ ଭୂତ ତରାସର ଦାୟିତ୍ୱ ନେଇଥିଲା ତାର କାମ ସରିଗଲା । ତେଣୁ ପୂର୍ବ ପ୍ରସ୍ତାବମତେ ଅନ୍ୟ ଦୁହିଁଙ୍କୁ ସାହାଯ୍ୟ କରିବାକୁ ସେ ନିର୍ଦ୍ଦିଷ୍ଟ ସ୍ଥାନରେ ରହିଥିଲା । କିନ୍ତୁ ଅନେକ ଖୋଜି ସୁଦ୍ଧା କାହାରିକୁ ପାଇଲା

ନାହିଁ । ସେଠାରେ ସେ କେବଳ ଗୋଟିଏ ଗାତ ଦେଖିବାକୁ ପାଇଲା । ପଡ଼ିଆକୁ ଯାଇ ତା ସଙ୍ଗୀର ଖଣ୍ଡିଆ ଲଙ୍ଗୁଡ଼ ପଡ଼ିଥିବାର ଦେଖିଲା । ସେଠାରୁ ଅଳ୍ପ ଦୂରରେ ଆଉ ଗୋଟିଏ ଗାତ ମଧ୍ୟ ଦେଖି ପାରିଲା ।

ସେ ଭାବିଲା, "ମୋର ସାଥି ଦୁହେଁ ଆଇଭାନକୁ ଜବତ କରିବାକୁ ଯାଇ ନିଶ୍ଚୟ କୌଣସି ବିପଦରେ ପଡ଼ିଛନ୍ତି । ସେମାନଙ୍କ କାମ ମୋତେ କରିବାକୁ ହେବ । ସେ ନିର୍ବୋଧ ଆଇଭାନକୁ ଯେ କୌଣସି ମତେ ଜବତ କରିବା ଦରକାର ।" ସେ ଆଇଭାନର ସନ୍ଧାନରେ ବାହାରିଲା ।

ସେତେବେଳକୁ ଆଇଭାନ ଘଅ ଜମାକରି ରଖିଦେଇ ଜଙ୍ଗଲକୁ କାଠ ହାଣିବାକୁ ଯାଇଥିଲା । ଦୁଇ ଭାଇ ଓ ସେ ଦୁହିଁଙ୍କ ସ୍ତ୍ରୀ ଆସିବାରୁ ଘରେ ଜାଗା ହେଉ ନ ଥିଲା । ଆଉ ଗୋଟିଏ ନୂଆ ଘର କରିବା ପାଇଁ କାଠ ଆଣିବା ସକାଶେ ଦୁଇ ଭାଇ ଆଇଭାନକୁ ଜଙ୍ଗଲକୁ ପଠାଇଥିଲେ ।

ଭୂତ ଜଙ୍ଗଲକୁ ଯାଇ ଆଇଭାନ କାଠ ହାଣୁଥିବାର ଦେଖିଲା । ସେ ଆଇଭାନକୁ ହଇରାଣ କରିବାକୁ ସ୍ଥିର କଲା । ଆଇଭାନ ଗୋଟାଏ ଗଛର ମୂଳ ହାଣିଲା । ଗଛଟା ତଳେ ପଡ଼ିବାର କଥା, କିନ୍ତୁ ତାହା ତଳେ ନପଡ଼ି ଆଉ ଗୋଟାଏ ଗଛ ଉପରେ ଲାଗି ରହିଲା । ଆଇଭାନ ଗୋଟାଏ ଡାଳ ହାଣି ସେଥିରେ ଠେଲି ଗଛଟାକୁ ତଳେ ପକାଇଲା; କିନ୍ତୁ ଏଥିପାଇଁ ତାକୁ ବହୁତ ପରିଶ୍ରମ କରିବାକୁ ପଡ଼ିଲା । ସେ ଆଉ ଗୋଟାଏ ଗଛର ମୂଳ ହାଣିଲା; ଏଥର ମଧ୍ୟ ସେହିପରି ଘଟିଲା । ତୃତୀୟ ଗଛ ହାଣିଲାବେଳକୁ ପୁଣି ସେ ମଧ୍ୟ ଅନ୍ୟ ଗଛର ଡ଼ାଳରେ ଲାଗିଲା ।

ଆଇଭାନ ପ୍ରାୟ ପଚାଶଟା ଗଛ ହାଣିବ ବୋଲି ବିଚାର କରିଥିଲା; କିନ୍ତୁ ଆଠ ଦଶଟା ହାଣିଲା ବେଳକୁ ସନ୍ଧ୍ୟା ହୋଇଗଲା । ସେତେବେଳକୁ ସେ ନିତାନ୍ତ ହାଲିଆ ହୋଇପଡ଼ିଥିଲା । ଏଣେ ଅନ୍ଧାର ମାଡ଼ି ଆସୁଥାଏ । ତାର ପିଠିରେ ବେଦନା ହେଉଥାଏ । ତଥାପି ସେ ଆଉ ଗୋଟାଏ ଗଛ ହାଣିଲା । ସେ ଏଡ଼େ ଦୁର୍ବଳ ବୋଧ କରୁଥିଲା ଯେ ଠିଆ ହେବାକୁ ତାର ଶକ୍ତି ନ ଥିଲା । କିଛି ସମୟ ବିଶ୍ରାମ ନେବା ପାଇଁ ସେ କୁରାଢ଼ିକୁ ଗଛରେ ମାରିଦେଇ ବସିପଡ଼ିଲା ।

ଆଇଭାନ କ୍ଳାନ୍ତ ହୋଇ ବସି ପଡ଼ିବାର ଦେଖି ଭୂତ ମନେ ମନେ ଭାରି ଖୁସି ହେଲା । ସେ ଭାବିଲା, "ଏତେ ବେଳକୁ ଆଇଭାନ କ୍ଳାନ୍ତ ହୋଇ ବିଶ୍ରାମ ନେବାକୁ ଗଲା । ଏଣିକି ମୁଁ ଟିକେ ବିଶ୍ରାମ ନେବି ।

ସେ ଗୋଟାଏ ଡାଳରେ ବସି ଦୁଇ ପାଖକୁ ଗୋଡ଼ ଲମ୍ବାଇ ତଳେ ଛନ୍ଦିଦେଲା । ଅଳ୍ପ ସମୟ ପରେ ଆଇଭାନ ଉଠି କୁରାଢ଼ି ଧରି ଗଛମୂଳରେ ଏପରି ଚୋଟ ଦେଲା ଯେ ଗଛଟା ତଳେ ପଡ଼ିଗଲା । ଏପରି ଘଟିବ ବୋଲି ଭୂତ ଆଦୌ ଭାବିନଥିଲା । ଗଛ ସହିତ ସେ ମଧ୍ୟ ତଳେ ପଡ଼ିଗଲା । ଡାଳ ସହିତ ସେ ଛନ୍ଦି ହୋଇରହିଲା । ଆଇଭାନ ଗଛର ଡାଳ ହାଣୁ ହାଣୁ ଭୂତକୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲା । ସେ କହିଲା, "କିରେ, ଏବେ ବି ତୁ ମୋ ସାଙ୍ଗରେ ଲାଗିଛୁ ?"

ଭୂତ କହିଲା, "ନା, ମୁଁ ଆଉ ଗୋଟାଏ ଭୂତ । ମୁଁ ତୁମ ଭାଇ ତରାସର ଦାୟିତ୍ୱରେ ଥିଲି ।"

ଆଇଭାନ କହିଲା, "ତୁ ଯିଏ ହୋଇଥା'ଆ, ସେଥିରେ କିଛି ଯାଏ ଆସେ ନାହିଁ । ଏଇ କୁରାଢ଼ିରେ ତୋତେ ଶେଷ କରି ଦେବି ।" ଏହା କହି ସେ କୁରାଢ଼ି ଉଞ୍ଚାଇବାରୁ ଭୂତ ବିକୃବି ହାତ ଯୋଡ଼ି କହିଲା, "ଦୟାକରି ମୋତେ ଛାଡ଼ିଦିଅ । ମୁଁ ତୁମର ସେବା କରିବି । ତୁମେ ଯାହା କରିବାକୁ କହିବ, ତାହା କରିବି ।"

ଆଇଭାନ ପଚାରିଲା, "ତୁ କଅଣ କରିପାରିବୁ ?"

ଉତ୍ତର ମିଳିଲା, "ତୁମେ ଯେତେ ମୋହର ଚାହିଁବ, ମୁଁ ସେତେ ତିଆରିକରି ଦେବି ।"

ଆଇଭାନ କହିଲା, "ଆଚ୍ଛା, ତୁ କିଛି ମୋହର ତିଆରି କରି ମତେ ଆଗ ଦେଖାଇ ଦେ ।"

ଭୂତ ଗୋଟିଏ ଦେବଦାରୁ ଗଛ ଦେଖାଇ କହିଲା, "ଏଇ ଗଛରୁ କେତୋଟି ପତ୍ର ନେଇ ଦୁଇ ହାତରେ ମକଚିଦିଅ । ଦେଖିବ, ସେଥିରୁ ମୋହର ବାହାରିବ ।"

ଆଇଭାନ କେତୋଟି ପତ୍ର ଆଣି ମକଚିବାରୁ ସେଥିରୁ ମୋହରଗୁଡ଼ିଏ ଗଳିପଡ଼ିଲା । ତାହା ଦେଖି ଆଇଭାନ ଭାବିଲା, "ଏଗୁଡ଼ିକ ବେଶ୍ ସୁନ୍ଦର ଦିଶୁଛି । ଏଥିରେ ପିଲାମାନେ ଖେଳି ଖୁସିହେବେ ।"

ଭୂତ ପୁଣି ପ୍ରାର୍ଥନା କଲା, "ଏବେ ମୋତେ ଛାଡ଼ିଦିଅ ।" ଆଇଭାନ ଡାଳରୁ ଟେକି ଭୂତକୁ ବାହାର କରିଦେଇ କହିଲା, "ଏବେ ଚାଲିଯାଅ । ଈଶ୍ୱର ତୋର ମଙ୍ଗଳ କରନ୍ତୁ ।"

ଈଶ୍ୱରଙ୍କ ନାଁ ଶୁଣିଲା କ୍ଷଣି ଭୂତ ଭୂଇଁ ଭିତରକୁ ପଶିଗଲା । ସେଇଁଠାରେ ସେ ଭୂତ ଭିତରକୁ ପଶିଲା ସେଠାରେ ଖାଲି ଗୋଟିଏ ଗାତ ରହିଗଲା ।

## ୬

ଦୁଇଭାଇଯାକ ନୂଆ ଘର ତିଆରି କରି ସୁଖରେ ରହିଲେ । ଆଇଭାନ ଫସଲ ଅମଳ କଲା । ଗୋଟାଏ ପର୍ବ ପଡ଼ିବାରୁ ସେ ଭୋଜିର ଯୋଗାଡ଼ କରି ତାର ଦୁଇଭାଇ ଓ ଭାଉଜଙ୍କୁ ନିମନ୍ତ୍ରଣ କଲା । କିନ୍ତୁ ସେମାନେ ତା ଘରକୁ ଆସିଲେ ନାହିଁ । ସେମାନେ ଭାବିଲେ, "ସାମାନ୍ୟ ଜଣେ ଚାଷୀର ଭୋଜିରେ ଯୋଗଦେବା ନିନ୍ଦାର ବିଷୟ ।"

ତେଣୁ ଆଇଭାନ କେତେ ଜଣ ଚାଷୀ ଓ ସେମାନଙ୍କ ସ୍ତ୍ରୀଙ୍କୁ ନିମନ୍ତ୍ରଣ କରି ଭଲରୂପେ ଖାଇବାକୁ ଦେଲା । ସେମାନଙ୍କୁ ପାନୀୟ ପିଇବାକୁ ଦେଲା, ନିଜେ ମଧ୍ୟ ପିଇଲା । ଏହା ପରେ ସେମାନଙ୍କୁ କହିଲା, "ମୋର ପ୍ରଶଂସା କରି ଗୀତ ଗାଇଲେ ମୁଁ ତୁମମାନଙ୍କୁ ଗୋଟିଏ ଅପୂର୍ବ ଜିନିଷ ଦେବି । ଯେଉଁଭଳି ଜିନିଷ ଆଗରୁ ଦେଖିନଥିବ ।"

ସେମାନେ କଥାଟାକୁ ଥଟ୍ଟାରେ ଉଡ଼ାଇ ଦେଲେ । ମାତ୍ର ତାର ପ୍ରଶଂସା କରି କେତୋଟି ଗୀତ ବୋଲିସାରି କହିଲେ, "ଏବେ କି ଅପୂର୍ବ ଜିନିଷ ରଖିଛ ଦିଅ ।"

"ଆଚ୍ଛା, ଅଣୁଛୁ" ବୋଲି କହି ଆଇଭାନ ଜଙ୍ଗଲ ଆଡକୁ ଦଉଡ଼ିଲା । ସ୍ତ୍ରୀଲୋକମାନେ ତାକୁ ଉପହାସ କରି କହିଲେ "ସେ ନିର୍ବୋଧ ଜଙ୍ଗଲକୁ ଯାଉଛି, ସେଠୁ କି ଅପୂର୍ବ ଜିନିଷ ଆଣିବ ?"

କିଛି ସମୟ ପରେ ଆଇଭାନ ଟୋକେଇଏ ମୋହର ଆଣି ତଳେ ଥକାଡ଼ି ଦେଇ କହିଲା, "ଯିଏ ଯେତେ ପାରୁଛ ନିଅ ।"

ପାଖରେ ଥିବା ସ୍ତ୍ରୀ ଓ ପୁରୁଷମାନେ ମୋହର ନେବା ପାଇଁ ମାଡ଼ି ଆସିଲେ । ଯିଏ ଯେତେ ପାରିଲେ ସେତେ ଗୋଟେଇଲେ । ସେମାନେ ଆପଣା ଭିତରେ ମାଡ଼ ଚକଟି ହେଉଥିବାର ଦେଖି ଆଇଭାନକୁ ହସମାଡ଼ିଲା । ଜଣେ ବୁଢ଼ୀ ଚକଟି ହୋଇ ଦରମଲା ହୋଇଗଲା । ଆଇଭାନ ବିରକ୍ତ ହୋଇ କହିଲା, "ତୁମଭଳି ନିର୍ବୋଧ କେଉଁଠି ନ ଥିବେ । ବୁଢ଼ୀଟାକୁ ଚକଟି ମାରି ପକାଇଥାନ୍ତ । ଏମିତି ହେଉଛ କାହିଁକି ? ମୁଁ ଆଉ କିଛି ଦେଉଛି ।" ଏହା କହି ସେ ଆହୁରି ଗୁଡ଼ିଏ ମୋହର ବାଣ୍ଟିଦେଲା । ସେଗୁଡ଼ିକ ଗୋଟେଇ ନେଇ ଲୋକେ ପାଟି କଲେ, "ଆମକୁ ଆହୁରି ଦିଅ ।" ଆଇଭାନ କହିଲା, "ଆଜି ଆଉ ଦେଇପାରିବି ନାହିଁ । ତୁମେମାନେ ଆଉ ଦିନେ ଆସିଲେ ଦେବି । ଏବେ ଚାଲ, ଗୀତଗାଇ ନାଚିବା ।"

ସ୍ତ୍ରୀମାନେ ଗୀତ ଗାଇବା ଆରମ୍ଭ କରିଦେଲେ । କିନ୍ତୁ ଆଇଭାନ କହିଲା, "ତୁମ ଗୀତ ଭଲ ଲାଗୁ ନାହିଁ ।" "ଏହାଠାରୁ ଭଲ ଗୀତ ଅଛି । ଅଚ୍ଛା, ତୁମେମାନେ ଟିକିଏ ଅପେକ୍ଷା କର । ଭଲ ଗୀତ ତୁମମାନଙ୍କୁ ଶୁଣାଇ ଦେବି ।"

ଏହା କହି ଆଇଭାନ ଅଗଣାରେ ଗୋଟାଏ ଗହମ ଭାରେଇ ସିଧାକରି ରଖିଦେଇ କହିଲା—

ଗହମ ଶିଷାରେ ଗହମ ଶୀଷା
ଆଦେଶ ମୋହର ଘେନ,
ହୋଇଯାଅ ଏବେ ମୋହର ଆଗରେ
ଗୋଟିଏ ଗୋଟିଏ ସୈନ୍ୟ ।

ଘୁନ୍ତୁଁ ଘୁନ୍ତୁଁ ଗହମର ପ୍ରତ୍ୟେକ ଶୀଷ ଜଣେ ଲେଖାଏଁ ସୈନ୍ୟ ହୋଇଗଲେ । ସେମାନେ ନାନା ବାଦ୍ୟ ବଜାଇ ଗୀତ ଗାଇବାକୁ ଲାଗିଲେ । ଏମାନଙ୍କୁ ଦେଖି ଓ ଗୀତ ବାଦ୍ୟ ଶୁଣି ଲୋକେ ଆଶ୍ଚର୍ଯ୍ୟ ହୋଇଗଲେ । କିଛି ସମୟ ପରେ ଆଇଭାନ ସେମାନଙ୍କୁ ପୁଣି ଅଗଣାକୁ ନେଇ କହିଲା —

ସୈନିକ ଯାଇ ହେ ସୈନିକ ଯାଇ
ନିଜ ନିଜ ପୂର୍ବ ରୂପକୁ ଧର ।

ସୈନ୍ୟମାନେ ପୁଣି ଗହମ ଶୀଷ ହୋଇଗଲେ । ଆଇଭାନ ଗହମ କଲେଇକୁ ଗଦାରେ ରଖିଦେଇ ଘରେ ଶୋଇପଡ଼ିଲା ।

୭

ପରଦିନ ସକାଳେ ସାଇମନ ଏସବୁ ଘଟନା ଶୁଣିପାରି ଆଇଭାନର ଘରେ ପହଞ୍ଚିଲା । ସେ ଖୁବ୍ ଆଦର କରି ଆଇଭାନକୁ ପଚାରିଲା, "ମୋତେ ଗୋଟିଏ କଥା କହିବାକୁ ହେବ । ତୁ ଏତେ ସୈନ୍ୟ କେଉଁଠୁ ଆଣିଲୁ ? ପୁଣି ସେମାନଙ୍କୁ କୁଆଡ଼େ ନେଲୁ ?"

ଆଇଭାନ କହିଲା, "ସେଥିରେ ତୁମର କଅଣ ଅଛି ?"

"କଅଣ ଅଛି ପଚାରୁଛୁ ? ଆରେ, ସୈନ୍ୟ ହେଲେ ଯାହା ଚାହିଁବ ତାହା କରିପାରିବ; ଏପରିକି ଗୋଟାଏ ରାଜ୍ୟ ମଧ୍ୟ ଜିଣିପାରିବ ।"

"ସତେ ! ତୁମେ ଏ କଥା ଆଗରୁ କହିଲ ନାହିଁ କାହିଁକି ? ତୁମେ ଯେତେ ସୈନ୍ୟ ଚାହିଁବ ମୁଁ ସେତେ ସୈନ୍ୟ ଦେଇପାରିବି । ମୁଁ ଆଉ ମାଆ ଅନେକ ଗହମ କଲେଇ ଜମାକରିଛୁ । ସୈନ୍ୟର ଅଭାବ ହେବ ନାହିଁ ।

ଏହା କହି ଆଇଭାନ ବଡ଼ ଭାଇକୁ ଖଳାବାଡ଼ିକୁ ଡାକି ନେଇ କହିଲା, "ମୁଁ ତୁମ ପାଇଁ ଯେଉଁ ସୈନ୍ୟ କରିଦେବି ତୁମେ ସେମାନଙ୍କୁ

ସଙ୍ଗେ ସଙ୍ଗେ ନେଇଯିବ । ଏଠାରେ ରହିଲେ ସେମାନଙ୍କୁ ଖାଇବାକୁ ଦେବାକୁ ପଡ଼ିବ । ଏତେ ଲୋକଙ୍କୁ ଖାଇବାକୁ ଦେବାକୁ ମିଳିବ କାହୁଁ ?"

ସାଇମନ ଏହି ପ୍ରସ୍ତାବରେ ରାଜିହେବାରୁ ଆଇଭାନ ଗହମ ଶୀଷରୁ ଗୋଟାଏ ପ୍ରକାଣ୍ଡ ସୈନ୍ୟଦଳ ତିଆରିକରିଦେଲା । ସାଇମନ ଏତେଗୁଡ଼ାଏ ସୈନ୍ୟ ପାଇ ଆନନ୍ଦିତ ହେଲା । ଆଇଭାନ କହିଲା, "ଭାଇ, ତୁମର ଆଉ ସୈନ୍ୟ ଦରକାର ହେଲେ ମୋତେ କହିଲେ ମୁଁ ଯୋଗାଇ ଦେବି ।" ଆଉ ସାଇମନ ସୈନ୍ୟମାନଙ୍କୁ ଘେନି ଯୁଦ୍ଧ କରିବାକୁ ଚାଲିଗଲା ।

ସାଇମନ ଯିବାର ଠିକ୍ ପରେ ତରାସ ଆସି ଉପସ୍ଥିତ ହେଲା । ସେ ମଧ୍ୟ ପୂର୍ବ ଦିନର ଘଟଣା ଶୁଣିଥିଲା । ସେ ଆଇଭାନକୁ କହିଲା, "ତୁ ଏତେ ସୁନା ମୋହର କେଉଁଠାରୁ ପାଇଲୁ ମୋତେ କହ । ବ୍ୟବସାୟ ଆରମ୍ଭ କରିବା-ପାଇଁ ତୁ ଯେବେ ମୋତେ କିଛି ମୋହର ଦିଅନ୍ତୁ, ତେଣିକି ମୁଁ ଦୁନିଆର ଟଙ୍କା ନେଇଆସନ୍ତି ।"

ଆଇଭାନ ବୁଝିପାରିଲା ନାହିଁ ଯେ କିଛି ସୁନା ହେଲେ ଭାଇ ଆହୁରି ସୁନା କିପରି ଆଣି ପାରିବ ? ସେ ବିସ୍ମିତ ହୋଇ କହିଲା, "ସତେ, ଏମିତି ହୋଇପାରିବ ? ମୋତେ ଆଗରୁ କହିଥିଲେ ହୋଇଥାନ୍ତା । ହଉ, ଏବେ କେତେ ସୁନା ତୁମର ଦରକାର ?"

ତରାସ ଆନନ୍ଦିତ ହୋଇ କହିଲା, "ବର୍ତ୍ତମାନ ତିନି ବସ୍ତା ସୁନା ହେଲେ ଚଳିବ ।"

ଆଇଭାନ ମଝିଆଁ ଭାଇକୁ ଗାଡ଼ିରେ ବସାଇ ଜଙ୍ଗଲକୁ ନେଇଗଲା । ସେ ଦେବଦାରୁ ଗଛରୁ ପତ୍ର ଆଣି ମକଚିବା ସଙ୍ଗେ ସଙ୍ଗେ ସୁନା ମୋହର ଝଡ଼ିବାକୁ ଲାଗିଲା । ତରାସ ଏହା ଦେଖି ଆନନ୍ଦରେ ଉଲ୍ଲସି ଉଠିଲା । ଗୁଡ଼ାଏ ମୋହର ହୋଇଯିବାରୁ ଆଇଭାନ ପଚାରିଲା, "ଏତିକରେ ତୁମର କାମ ଚଳିବ ନା ଆଉରି ଦରକାର ?" ତରାସ କହିଲା, "ବର୍ତ୍ତମାନ ଏତିକି ଯଥେଷ୍ଟ ।"

ଆଇଭାନ କହିଲା, "ହଉ, ତମର ଯଦି ଆଉ ସୁନା ଦରକାର ହେବ ମୋତେ ଆସି କହିବ । ଗଛରେ ଅନେକ ପତ୍ର ଅଛି । ସୁନାର ଅଭାବ ହେବ ନାହିଁ ।"

ତରାସ ସୁନାକୁ ଗାଡ଼ିରେ ଲଦି ବ୍ୟବସାୟ କରିବା ପାଇଁ ଚାଲିଗଲା ।

ଏହିପରି ସାଇମନ ସୈନ୍ୟ ନେଇ ଯୁଦ୍ଧ କରିବାକୁ ଗଲା, ତରାସ ସୁନା ନେଇ ବ୍ୟବସାୟ କରିବାକୁ ଗଲା । ଦୁହେଁଯାକ ନିଜ ନିଜ କାମରେ ଲାଗିଗଲେ । ସାଇମନ ସୈନ୍ୟବଳରେ ଗୋଟାଏ ରାଜ୍ୟର ରାଜାଙ୍କୁ ପରାସ୍ତ କରି ସେ ରାଜ୍ୟର ରାଜା ହେଲା । ତରାସ ମଧ୍ୟ ବ୍ୟବସାୟ କରି ବହୁତ ଟଙ୍କା ସୁନା ଅର୍ଜିଲା ।

ଦୁଇଭାଇଙ୍କର ଭେଟ ହେବାରୁ ସାଇମନ କହିଲା, "ଆଇଭାନ ସୈନ୍ୟ ଯୋଗାଇ ଦେବାରୁ ମୁଁ ଗୋଟାଏ ରାଜ୍ୟ ଜିଣି ସେଠାର ରାଜା ହୋଇଛି; ଖୁବ୍ ଆଡ଼ମ୍ବରରେ ଚଳୁଛି; କିନ୍ତୁ ଏତେ ସୈନ୍ୟଙ୍କୁ ପୋଷିବା ପାଇଁ ମୋର ଟଙ୍କା ସୁନାର ଅଭାବ ହେଲାଣି ।"

ତରାସ କହିଲା, "ଆଇଭାନ ମୋତେ ପ୍ରଥମେ କିଛି ମୋହର ଦେଲା । ସେଥିରେ ବ୍ୟବସାୟ କରି ମୁଁ ବହୁତ ଧନ ଅର୍ଜିଲିଣି; କିନ୍ତୁ ଏବେ ମୋର ଗୋଟାଏ ବିପଦ ଉପସ୍ଥିତ । ଚୋରି ଡକାୟତିର ଭୟ, ମୋ ଟଙ୍କା ସୁନା ଜଗିବା ପାଇଁ ଲୋକ ନାହିଁ ।"

ଦୁହେଁ ବିଚାର କରି ପୁଣି ଆଇଭାନ ପାଖକୁ ଯିବାକୁ ସ୍ଥିର କଲେ । ଦୁହେଁ ଗାଡ଼ିରେ ବସି ଆଇଭାନ ପାଖରେ ପହଞ୍ଚିଲେ । ସାଇମନ କହିଲା, "ମୋର ସୈନ୍ୟସଂଖ୍ୟା ଯଥେଷ୍ଟ ହେଉ ନାହିଁ । ମୋ ପାଇଁ ଆଉ କିଛି ସୈନ୍ୟ କରିଦେ ।"

ଆଇଭାନ କହିଲା, "ନା, ତୁମପାଇଁ ମୁଁ ଆଉ ସୈନ୍ୟ କରିଦେବି ନାହିଁ ।"

"ତୁ କହିଥିଲୁ ଯେ ମୁଁ କହିଲେ ଆଉ ସୈନ୍ୟ ଦେବୁ !"

"କହିଥିଲି ସତ, କିନ୍ତୁ ତମ ସୈନ୍ୟମାନେ ମଣିଷ ମାରୁଛନ୍ତି । ଦିନେ ମୁଁ ହଳ କରୁଥିଲି । ଗୋଟିଏ ସ୍ତ୍ରୀ ଲୋକ କାନ୍ଦି କାନ୍ଦି ଗୋଟିଏ କଫିନ

ପଛରେ ଯାଉଥିଲା । ତାହାଠାରୁ ଶୁଣିଲି, କଫିନ୍‌ରେ ତାର ସ୍ୱାମୀର ଶବ । ତୁମର ସୈନ୍ୟମାନେ ତାର ସ୍ୱାମୀକୁ ମାରିଛନ୍ତି । ମୁଁ ଜାଣିଥିଲି ଯେ ସୈନ୍ୟ-ମାନେ ଭଲ ବାଦ୍ୟ ବଜାଇ ଗୀତ ଗାଆନ୍ତି । ସେମାନେ ମଣିଷ ମାରନ୍ତି । ତେଣୁ ମୁଁ ତୁମକୁ ଆଉ ସୈନ୍ୟ ଦେଇପାରିବ ନାହିଁ ।"

ସାଇମନ କେତେ ବୁଝାଇ କହିଲେ ସୁଦ୍ଧା ଅଇଭାନ୍‌ର ମନ ବଦଳିଲା ନାହିଁ ।

ତରାସ କହିଲା, "ମୋତେ ଆଉ କିଛି ସୁନା ଦେ ।"

"ନା, ମୁଁ ଆଉ ସୁନା ବାହାର କରିବ ନାହିଁ ।"

"ତୁ ପରା ମୋତେ ଆହୁରି ସୁନା ଦେବୁ ବୋଲି କହିଥିଲୁ !"

"ହଁ, କହିଥିଲି । ମାତ୍ର ତୋର ସେଇ ସୁନା ମାଇକେଲର ଝିଅଠାରୁ ତାର ଗାଈଟା ନେଇଗଲା ।"

"ଆରେ ବୋକା, ସୁନା କିପରି ଗାଈଟାକୁ ନେଇଗଲା ?"

"ନେଇ ତ ଗଲା ! ମାଇକେଲର ଝିଅର ଗାଈଟିଏ ଥିଲା । ତାର ପିଲାମାନେ ସେ ଗାଈର ଦୁଧ ପିଉଥିଲେ । ସେ ଦିନ ତାର ପିଲାମାନେ ଆସି ମୋତେ ଦୁଧ ମାଗିଲେ । ମୁଁ ପଚାରିଲି, 'ତମ ଗାଈ କୁଆଡ଼େ ଗଲା ?' ସେମାନେ କହିଲେ, 'ତରାସର ମେନେଜର ଅସି ମାଆକୁ ତିନଟା ସୁନା ମୋହର ଦେଇ ଗାଈକୁ ନେଇଗଲେ । ସେଇ ଦିନଠାରୁ ଆମେ ଦୁଧ ପାଉନାହୁଁ ।' ମୁଁ ତୁମକୁ ସୁନା ମୋହର ଦେଲାବେଳେ ଭାବିଥିଲି ଯେ ତୁମେମାନେ ସେଥିରେ ଖେଳିବ । ସେଇ ସୁନା ଦେଇ ତୁମେ ପିଲାଙ୍କ ଗାଈ ନେଇଯିବ ବୋଲି ମୁଁ ଜାଣିନଥିଲି । ତୁମକୁ ମୁଁ ଆଉ ମୋଟେ ସୁନା ଦେବିନାହିଁ ।" ଯେତେ କହିଲେ ସୁଦ୍ଧା ଆଇଭାନ ଆଉ ସୁନା ଦେବାକୁ ମନା କରିଦେଲା । ଦୁଇଭାଇଯାକ ନିରାଶ ହୋଇ ଯାଉ ଯାଉ ଗୋଟାଏ ଉପାୟ ପାଞ୍ଚିଲେ । ସାଇମନ କହିଲା, "ମୁଁ ଗୋଟାଏ କଥା ଭାବିଛି । ତୁମେ ମୋତେ କିଛି ସୁନା ଦିଅ; ତାହାହେଲେ ମୁଁ ମୋର ସୈନ୍ୟମାନଙ୍କୁ ଖାଇବାକୁ ଦେଇପାରିବ । ମୁଁ ସେହିପରି ତୁମକୁ କେତେକ ସୈନ୍ୟ ଦେବି । ସେମାନେ ତୁମର ଧନ-ସମ୍ପତ୍ତି ଜଗିବେ ।" ତରାସ ଏ ପ୍ରସ୍ତାବରେ ରାଜିହେଲା । ଦୁଇ ଭାଇ ସବୁ

ସମ୍ପତ୍ତି ଓ ସୈନ୍ୟମାନଙ୍କୁ ବାଣ୍ଟିନେଲେ । ରାଜ୍ୟକୁ ଦୁଇଭାଗ କରି ପ୍ରତ୍ୟେକେ ଗୋଟିଏ ଗୋଟିଏ ଅଂଶରେ ରାଜାହେଲେ ।

୮

ଆଇଭାନ ଘରେ ରହି କ୍ଷେତରେ କାମ କରୁଥାଏ । ମାର୍ଥା ତାଙ୍କୁ ସାହାଯ୍ୟ କରେ । ମାଆ ବାପଙ୍କୁ ପୋଷିବାରେ ତାର ହେଳା ନଥାଏ । ଥରେ ଆଇଭାନର କୁକୁରଟି ରୋଗରେ ପଡ଼ିଲା । ତାର ଦେହ ଶୁଖିଗଲା, ଦେହର ରୁମ ଉପୁଡ଼ିଗଲା । ତାର ବଞ୍ଚିବାର ଆଶା ରହିଲା ନାହିଁ । କୁକୁରଟି ତାର ଅତି ପ୍ରିୟ ଥିଲା । ତାଙ୍କୁ ଖାଇବାକୁ ଦେବାପାଇଁ ସେ ଆପଣା ଟୋପିରେ ଖଣ୍ଡିଏ ରୁଟି ନେଇଗଲା । ସେଇ ଟୋପିରେ ଚେର ଦୁଇଖଣ୍ଡି ଥିଲା ବୋଲି ତାର ମନେନଥିଲା । ସେ କୁକୁର ଆଗରେ ଟୋପିକୁ ଓଲଟାଇ ଦେଲା ବେଳକୁ ରୁଟି ସାଥିରେ ଖଣ୍ଡିଏ ଚେର ମଧ୍ୟ ପଡ଼ିଗଲା । କୁକୁର ଚେର ସହିତ ରୁଟି ଖଣ୍ଡିକ ଖାଇବାମାତ୍ରେ ସତେଜ ହୋଇଉଠିଲା; ଲାଙ୍ଗୁଳ ହଲାଇ ଖେଳିଲା; ଜୋର୍‌ରେ ଭୁକିଲା । ତାର ରୋଗ ଏକବାରେ ଗୁଞ୍ଚିଗଲା ।

ଆଇଭାନର ବାପ ମାଆ କୁକୁରକୁ ଦେଖି ଆଶ୍ଚର୍ଯ୍ୟ ହୋଇ ପଚାରିଲେ "ତୋ! କୁକୁରକୁ କପରି ଭଲକଲୁ ?" ଆଇଭାନ କହିଲା, "ରୋଗ ଭଲ କରିବାପାଇଁ ମୋ ପାଖରେ ଦୁଇଖଣ୍ଡ ଚେର ଥିଲା । ସେଥିରୁ ଖଣ୍ଡେ ଖାଇବାରୁ କୁକୁର ଭଲହୋଇଗଲା ।"

ଏହି ସମୟରେ ରାଜାଙ୍କ ଝିଅ ବେମାର ପଡ଼ିଲା । ରାଜା ସହର ବଜାର ସବୁଠାରେ ଘୋଷଣା ଦେଲେ, "ଯେବେ କେହି ମୋ ଝିଅର ରୋଗ ଭଲ କରିଦେବ, ମୁଁ ତାକୁ ଯଥେଷ୍ଟ ପୁରସ୍କାର ଦେବି । ସେ ଯଦି ବିଭା ହୋଇ ନଥାଏ, ତାକୁ ମୋ ଝିଅ ସାଥିରେ ବିଭାକରାଇବି ।" ଆଇଭାନର ଗ୍ରାମରେ ମଧ୍ୟ ଏହି ଘୋଷଣା ଶୁଣାଇଦିଆଗଲା ।

ଆଇଭାନର ବାପ ମାଆ ଏହି ଘୋଷଣା ଶୁଣି ତାକୁ କହିଲେ, "ଚେର ଖଣ୍ଡିକ ନେଇ ତୁ ରଜାଙ୍କ ନଅରକୁ ଯାଆ । ରଜାଝିଅ ଭଲହୋଇଗଲେ ତୋର ଭାଗ୍ୟ ବଦଳିଯିବ ।"

ଆଇଭାନ ବାପ ମାଆଙ୍କ କଥା ମାନି ଯିବାକୁ ବାହାରିଲା । ବାପ ତାକୁ ଭଲ ପୋଷାକ ପିନ୍ଧାଇ ବିଦାୟ ଦେଲେ । ଆଇଭାନ ଘରୁ ବାହାରି ଦାଣ୍ଡରେ ହେଲା ବେଳକୁ ଗୋଟିଏ ଭିକାରୁଣୀକୁ ଦେଖିଲା । ତାର ଗୋଟିଏ ହାତ କେମିତି ହୋଇଥିବାରୁ ଅଚଳ ହୋଇଥାଏ । ସେ କହିଲା, "ମୁଁ ଶୁଣିଲି, ତୁମେ ସବୁ ରୋଗ ଭଲ କରିପାରୁଛ । ମୋର ଗୋଟାଏ ହାତ କେମିତି, ଅଚଳ । ମୁଁ କିଛି କାମ କରିପାରୁ ନାହିଁ; ଏପରିକି ନିଜର ଲୁଗା ଖଣ୍ଡିକ ମଧ୍ୟ ପିନ୍ଧିବାରେ କଷ୍ଟ ହେଉଅଛି । ଦୟା କରି ମୋତେ ଭଲ କରିଦିଅ । ଈଶ୍ୱର ତୁମର ମଙ୍ଗଳ କରିବେ ।"

ଆଇଭାନ ତା ପାଖରେ ଥିବା ଚେର ଝଣ୍ଡିକ ବାହାରକରି ଭିକାରୁଣୀକୁ ଦେଇ କହିଲା, "ନେ, ଏହାକୁ ଖାଇଦେ; ଭଲହୋଇଯିବୁ ।" ଭିକାରୁଣୀ ସେ ଖଣ୍ଡିକ ଖାଇଲା ମାତ୍ରେ ପୂରା ଭଲହୋଇଗଲା ।

ଏଥି ମଧ୍ୟରେ ଆଇଭାନର ବାପ ମାଆ ପୁଅକୁ ସଙ୍ଗରେ ନେଇ ରାଜାଙ୍କ ପ୍ରାସାଦକୁ ଯିବାକୁ ପହଞ୍ଚିଲେ । କିନ୍ତୁ ଦେଖନ୍ତି ତ ପୁଅ ଚେର ଝଣ୍ଡିକ ଗୋଟାଏ ଭିକାରୁଣୀକୁ ଦେଇସାରିଲାଣି । ସେମାନେ ବିରକ୍ତ ହୋଇ ପୁଅକୁ କହିଲେ, "ତୁ ଏଡ଼େ ଓଲୁ ଯେ ଚେରଝଣ୍ଡି ସେ ଭିକାରୁଣୀକୁ ଦେଇ ପକାଇଲୁ ! ଏବେ ରଜାଝିଅକୁ କିପରି ଭଲକରିବୁ ? ଆଉ ଯିବୁ କାହିଁକି ?"

ଭିକାରୁଣୀର ବିକଳ ସହି ନପାରି ଆଇଭାନ ଚେର ଝଣ୍ଡିକ ଦେଇଥିଲା । ଏବେ ରଜାଝିଅର ରୋଗ କଥା ଭାବି ତାର ମନରେ ଭାରି କଷ୍ଟ ହେଲା । ସେ ଘୋଡ଼ାଗାଡ଼ିରେ ବସି ପ୍ରାସାଦ ଆଡ଼କୁ ଗାଡ଼ି ଚଲାଇଲା । ବାପ ପଚାରିଲା, "ଆରେ ବୋକା, ସିଆଡ଼େ ଗାଡ଼ି ନେଉଛୁ କାହିଁକି ?"

"ରଜାଝିଅର ରୋଗ ଭଲକରିବି ବୋଲି ।"

"ଔଷଧ ତ ଦେଇପକାଇଲୁ । ଆଉ କାହିଁରେ ଭଲକରିବୁ ?"

"ଔଷଧ ନ ଥାଉ । ମୁଁ ଯାଇ ଦେଖେ କଅଣ ହେଉଛି ।"

ଏହା କହି ସେ ଗାଡ଼ିରେ ବସି ରାଜବାଟୀକୁ ଗଲା । ସେ ପ୍ରାସାଦରେ ପାଦ ଦେବାକ୍ଷଣି ରଜାଝିଅ ଭଲହୋଇଉଠିଲେ । ରଜା ଭାରି ଆନନ୍ଦିତ ହୋଇ ଆଇଭାନକୁ ପ୍ରାସାଦ ଭିତରକୁ ନେଇ ତାକୁ ସୁନ୍ଦର ପୋଷାକ ଓ ଅଳଙ୍କାର

ପିନ୍ଧାଇ ଦେଲେ । ଖୁବ୍ ଆଦର କରି କହିଲେ, "ତୁମେ ମୋର ଜ୍ୱାଇଁ ହେଲ । ମୋ ଝିଅକୁ ବିବାହ କରି ଏଇଠାରେ ରହ ।"

ଆଇଭାନ ରାଜାଙ୍କ ଝିଅକୁ ବିବାହ ହୋଇ ଉଆସରେ ରହିଲା । କିଛିକାଳ ପରେ ରାଜାଙ୍କର ମୃତ୍ୟୁ ହେବାରୁ ଆଇଭାନ ସେ ରାଜ୍ୟର ରାଜା ହେଲା ।

ଏହିପରି ତିନିଭାଇଯାକ ଗୋଟିଏ ଗୋଟିଏ ରାଜ୍ୟର ରାଜା ହୋଇ ରହିଲେ ।

## ୯

ତିନିଭାଇ ନିଜ ନିଜ ରାଜ୍ୟରେ ରାଜତ୍ୱ କଲେ । ସାଇମନ ଆଇଭାନଠାରୁ ଯେଉଁ ସୈନ୍ୟ ନେଇଥିଲା ସେମାନଙ୍କ ସାହାଯ୍ୟରେ ରାଜ୍ୟରୁ ଅଧିକ ସୈନ୍ୟ ସଂଗ୍ରହ କଲା । ପ୍ରତି ଦଶଟି ପରିବାରରୁ ଜଣେ ଲେଖାଏଁ ସୁସ୍ଥ ସବଳ ଯୁବକଙ୍କୁ ସୈନ୍ୟ ହେବାକୁ ବାଧ୍ୟକରାଗଲା । ଏହିପରି ସାଇମନ ଗୋଟିଏ ବଡ଼ ସୈନ୍ୟଦଳ ଗଢ଼ିଲା । କେହି ତାର ବିରୋଧ କଲେ ସେ ସୈନ୍ୟମାନଙ୍କୁ ପଠାଇ ତାକୁ ଦମନ କରୁଥିଲା । ସମସ୍ତେ ତାକୁ ଭୟ କଲେ । ସେ ଯେତେବେଳେ ଯାହା ଚାହିଁଲା, ତାହା ଜବରଦସ୍ତି ନେଇଆସିଲା । ତାର ସୈନ୍ୟମାନଙ୍କୁ ଭୟ କରି କେହି କିଛି କହିବାକୁ ସାହସ କଲେନାହିଁ ।

ତରାସ ମଧ୍ୟ ଖୁବ୍ ଆଡ଼ମ୍ବରରେ ଚଳୁଥିଲା । ସେ ଆଇଭାନଠାରୁ ଯେଉଁ ଟଙ୍କା ସୁନା ଆଣିଥିଲା, ତାକୁ ବୃଥା ଖର୍ଚ୍ଚରେ ଉଡ଼ାଇ ନ ଦେଇ ନାନା ଉପାୟରେ ବଢ଼ାଇବାରେ ଲାଗିଲା । ରାଜ୍ୟରେ ଆଇନ ଓ ଶୃଙ୍ଖଳା ପ୍ରତିଷ୍ଠା କରି ସେ ଧନ ବଢ଼ାଇବା ଦିଗରେ ମନ ଦେଲା । ପ୍ରଜାମାନଙ୍କଠାରୁ ନାନା ପ୍ରକାରରେ ଖଜଣା ଆଦାୟ ହେଲା । ପ୍ରତି ପ୍ରଜାକୁ ମୁଣ୍ଡପିଛା କିଛି ଖଜଣା ଦେବାକୁ ପଡ଼ିଲା । ରାସ୍ତାରେ ଚାଲିବା ପାଇଁ, ଗାଡ଼ି ଚଲାଇବା ପାଇଁ ଖଜଣା ବସିଲା । ଯୋତା, ମୋଜା, ପୋଷାକ ପ୍ରଭୃତି ଉପରେ ଟିକସ ପଡ଼ିଲା । ଲୋକେ ଟଙ୍କା ପାଇବା ପାଇଁ ସବୁ ଜିନିଷ ଆଣି ରଜାଙ୍କ ପାଖେ ପହଞ୍ଚିଲେ । ଅନେକ ଲୋକ ତାଙ୍କ ଅଧୀନରେ ଚାକିରି କଲେ । ସମସ୍ତଙ୍କର ଟଙ୍କା ଦରକାର । ଟଙ୍କା ସକାଶେ ଲୋକେ ରଜାଙ୍କ ହୁକୁମ ଅନୁସାରେ ଚଳିଲେ ।

ଆଇଭାନ ମଧ୍ୟ ଏକ ପ୍ରକାରେ ଭଲଥିଲା । ଶ୍ୱଶୁର ମଲା ପରେ ସେ ନିଜେ ରାଜା ହେଲା । କିନ୍ତୁ ସେ ତାର ବହୁମୂଲ୍ୟ ପୋଷାକମାନ ଦେହରୁ କାଢ଼ି ସିନ୍ଦୁକରେ ରଖିଦେଲା ଓ ତାର ପୁରୁଣା ଚାଷୀ ପୋଷାକ ପିନ୍ଧିଲା । ସେ ରାଜପ୍ରାସାଦରେ ସବୁ ସମସ୍ତ ନିକଟାଇ କ୍ଷେତରେ କାମ କରିବାକୁ ଲାଗିଲା । ନିଜର ବାପ, ମାଆ ଓ ଭଉଣୀଙ୍କୁ ଆଣି ରାଜପ୍ରାସାଦରେ ରଖାଇଲା ।

ଲୋକେ ଆସି କହିଲେ, "ଆପଣ ହେଉଛନ୍ତି ଦେଶର ରାଜା । ନିଜ ହାତରେ କ୍ଷେତରେ କାମ କରିବା ସୁନ୍ଦର ନୁହେଁ ।"

ଆଇଭାନ କହିଲା, "ରାଜା ହେଲି ବୋଲି କାମ ନ କରିବି କାହିଁକି ? ଦେଖ, ମୁଁ ଦିନକୁ ଦିନ ମୋଟା ହୋଇଯାଉଛି; ମୋର କ୍ଷୁଧା ହେଉ-ନାହିଁ । ରାତିରେ ନିଦ ହେଉନାହିଁ । କାମ ନକଲେ ଚଳିବ କିପରି ? କାମ ନ କରି ଖାଇବ କାହିଁ ? ପ୍ରତ୍ୟେକ ଲୋକ କାମ କରିବା ଦରକାର ।"

ଜଣେ ମନ୍ତ୍ରୀ କହିଲେ, "କର୍ମଚାରୀମାନଙ୍କୁ ଦରମା ଦେବାକୁ ଟଙ୍କା ନାହିଁ ।"

"ଯେବେ ଟଙ୍କା ନାହିଁ ଦରମା ଦିଅ ନାହିଁ ।"

"ଦରମା ନ ପାଇଲେ ସେମାନେ ଚାକିରୀ କରିବେ ନାହିଁ ।"

"ସେମାନେ ଚାକିରୀ ନକରନ୍ତୁ । ସେମାନେ କ୍ଷେତବାଡ଼ିରେ କାମ କରିବାକୁ ବେଶି ବେଳ ପାଇବେ । ଅନେକ କାମ କରିବାକୁ ପଡ଼ିଛି ।"

ଏହି ସମୟରେ ଦୁଇଜଣ ଲୋକ ବିଚାର ପାଇଁ ଅଣାଗଲେ । ଜଣେ ଆପତ୍ତି କଲା, "ଏ ଲୋକଟି ମୋର ଟଙ୍କା ଚୋରି କରି ନେଇଛି ।" ଆଇଭାନ କହିଲା, "ସେଥିରେ କ୍ଷତି କଅଣ ? ତାର ଟଙ୍କା ନଥିଲା । ତୋର ଥିଲା, ସେ ନେଇଗଲା, ଏଥିରେ କିଛି ଦୋଷ ନାହିଁ ।"

ଏଭଳି ବିଚାର ଦେଖି ସମସ୍ତେ ଜାଣିପାରିଲେ ଯେ ରଜାଟା ନିହାତି ନିର୍ବୋଧ । ରାଣୀ ଆସି ସ୍ୱାମୀକୁ କହିଲେ, "ଲୋକେ କହୁଛନ୍ତି, ତୁମେ ଏକବାରେ ନିର୍ବୋଧ ।"

ଆଇଭାନ କହିଲା, "ବେଶ୍ କୁହନ୍ତୁ, ସେଥିରେ କଅଣ ଅଛି ?"

ସ୍ତ୍ରୀ ଚିନ୍ତା କରିବାକୁ ଲାଗିଲା, "ଏବେ ମୁଁ କଅଣ କରିବି ? ମୋର ସ୍ୱାମୀ ନିର୍ବୋଧ । ତାର କାମ ସବୁ ବିଚିତ୍ର । ମୁଁ ତାର କଥା ମାନି ତାରି ପରି ଚାଲିବି କି କଅଣ କରିବି ?"

ବହୁତ ଭାବି ଭାବି ସେ ସ୍ଥିର କଲା, "ସ୍ୱାମୀ ନିର୍ବୋଧ ହେଉ ବା ଜ୍ଞାନୀ ହେଉ, ସେ ସ୍ୱାମୀ । ସ୍ୱାମୀ ଯେଉଁ ବାଟରେ ଚାଲିବ ସ୍ତ୍ରୀ ମଧ୍ୟ ସେଇବାଟେ ଯିବା ଉଚିତ । ମୁଁ ମୋର ସ୍ୱାମୀ ଭଳି ଚାଲିବି ।"

ସେ ତାର ବହୁମୂଲ୍ୟ ପୋଷାକ, ଅଳଙ୍କାର ପ୍ରଭୃତି ଦେହରୁ ବାହାର କରିଦେଇ ସିନ୍ଦୂକରେ ରଖିଦେଲା; ମାଆଠାରୁ କାମକରି ଶିଖିଲା । ନିଜେ ଯାଇ ସ୍ୱାମୀଙ୍କୁ କ୍ଷେତ କାମରେ ସାହାଯ୍ୟ କଲା ।

ରାଜ୍ୟରେ ଯେଉଁ ଜ୍ଞାନୀଲୋକମାନେ ଥିଲେ, ସେମାନେ ରାଜ୍ୟ ଛାଡ଼ି ପଳାଇଲେ । କେବଳ ମୂର୍ଖ, ନିର୍ବୋଧମାନେ ରାଜ୍ୟରେ ରହି କାମ କଲେ । କାହାରି ପାଖେ ଟଙ୍କା ପଇସା ରହିଲା ନାହିଁ । ବଳବାହୁରେ କାମ କରି ସେମାନେ ଯାହା ଅମଳ କଲେ, ତାକୁ ଖାଇଲେ; କାହାରି ନିଅଣ୍ଟ ହେଲେ ତାକୁ ଦେଇ ଚଳାଇନେଲେ ।

## ୧୦

ଭୂତମାନେ ଭାଇମାନଙ୍କର କି କି ଅନିଷ୍ଟ କଲେ ତାହା ଜାଣିବାପାଇଁ ଭୂତସରଦାର ଅପେକ୍ଷା କରିଥିଲା । ଅନେକ ଦିନ ଗଲା; ତଥାପି କାହାର କିଛି ଖବର ନପାଇ ନିଜେ ଘଟଣା କଅଣ ଜାଣିବାକୁ ଚେଷ୍ଟାକଲା । ସେ ଆଗେ ତାର ଭୂତମାନଙ୍କୁ ଖୋଜିଲା; ମାତ୍ର ସେମାନଙ୍କୁ ପାଇଲା ନାହିଁ । ଶେଷରେ ଗାତ ତିନୋଟି ଦେଖି ସ୍ଥିର କଲା ଯେ ସେମାନେ କିଛି କରି ନ ପାରି ଗାତବାଟେ ପଳାଇ ଯାଇଅଛନ୍ତି । ତେଣୁ ସେ ନିଜେ ଭାଇମାନଙ୍କୁ ଆୟତ୍ତ କରିବାକୁ ବାହାରିଲା ।

ସେ ଭୂତମାନଙ୍କୁ ଖୋଜିବାକୁ ଯାଇ ଦେଖିଲା ଯେ ତିନିହେଁଯାକ ଗୋଟିଏ ଗୋଟିଏ ରାଜ୍ୟର ରାଜା ହୋଇଛନ୍ତି ! ଯାହାଙ୍କର ସର୍ବନାଶ କରିବାକୁ ସେ ଭୂତମାନଙ୍କୁ ପଠାଇଥିଲା, ସେମାନେ ରାଜା ହୋଇ ସୁଖରେ ଥିବାର ଜାଣି ସେ ରାଗରେ ଅସ୍ଥିର ହେଲା ।

ସେ ପ୍ରଥମେ ଜଣେ ସେନାପତିର ବେଶ ପିନ୍ଧି ରାଜା ସାଇମନ ପାଖରେ ପହଞ୍ଚିଲା । ସେ କହିଲା, "ମହାରାଜ, ମୁଁ ଜଣେ ମହାନ୍ ବୀର । ସୈନ୍ୟଚାଳନା ବିଷୟରେ ମୋ ଭଳି ଲୋକ ଦେଖାନାହିଁ । ମୋତେ ଆପଣଙ୍କର ସେନାପତି କରି ରଖନ୍ତୁ ।"

ସାଇମନ ତାକୁ ନାନା ପ୍ରଶ୍ନ ପଚାରି ବୁଝିଲା ଯେ ଲୋକଟା ପ୍ରକୃତରେ ଯୁଦ୍ଧ ବିଦ୍ୟାରେ ନିପୁଣ । ସେ ତାକୁ ନିଜ ସେନାପତି ପଦରେ ନିଯୁକ୍ତ କଲା । ନୂଆ ସେନାପତି ସାଇମନକୁ କହିଲା, "ଆପଣ ଗୋଟାଏ ପ୍ରକାଣ୍ଡ ସୈନ୍ୟଦଳ ଗଠନ କରନ୍ତୁ । ଆପଣଙ୍କ ରାଜ୍ୟରେ ଅନେକ ଲୋକ ବେକାର ଅଛନ୍ତି । ସେମାନେ ସୈନ୍ୟ ହେବାକୁ ଆଗଭର ହେବେ । ଯେଉଁମାନେ ସ୍ୱଇଚ୍ଛାରେ ନ ଆସିବେ, ସେମାନଙ୍କୁ ବାଧ୍ୟ କରାଯିବ । ଆପଣଙ୍କର ସୈନ୍ୟ ସଂଖ୍ୟା ପାଞ୍ଚଗୁଣ ବଢ଼ିଯିବ । ନୂଆ ପ୍ରକାରର ବନ୍ଧୁକ, କମାଣ ତିଆରି କରିବା । ମୁଁ ଏପରି ବନ୍ଧୁକ ତିଆରିକରିବି ଯେ ସେଥିରୁ ଥରକେ ଶହ ଶହ ଗୁଳି ମାରିହେବ । ମୁଁ ଯେଉଁ କମାଣ କରାଇବି ସେଥିରେ ଥରକେ ହଜାର ହଜାର ଲୋକ ମରିପାରିବେ; ଏପରିକି ପଥର କାନ୍ଥ ମଧ୍ୟ ଭାଙ୍ଗି ଗୁଣ୍ଡ ହୋଇଯିବ ।"

ସେନାପତିର ପରାମର୍ଶରେ ସାଇମନ ରାଜ୍ୟର ସବୁ ବଳିଷ୍ଠ ଲୋକଙ୍କୁ ସୈନ୍ୟଭାବରେ କାର୍ଯ୍ୟ କରିବାକୁ ବାଧ୍ୟ କଲା । ବନ୍ଧୁକ, କମାଣ ଓ ଗୋଳା ଗୁଳି ତିଆରି ପାଇଁ କାରଖାନା ମାନଙ୍କରେ ଦିନରାତି କାମ ଚାଲିଲା । ସବୁ ପ୍ରସ୍ତୁତ ହେଲା ପରେ ସାଇମନ ଗୋଟିଏ ପଡ଼ୋଶି ରାଜ୍ୟ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲା । ଶତ୍ରୁ ସୈନ୍ୟମାନେ ପ୍ରତିଆକ୍ରମଣ କରିବାକୁ ଆସିଲେ; କିନ୍ତୁ କମାଣର ଗୋଳାରେ ଓ ବନ୍ଧୁକର ଗୁଳିରେ ସେମାନେ ବହୁ ସଂଖ୍ୟାରେ ମଲେ । ଶେଷରେ ରାଜା ରାଜ୍ୟ ଛାଡ଼ିଦେଇ ସାଇମନ୍‌ର ଶରଣ ପଶିଲେ ।

ସାଇମନ ନୂଆ ସେନାପତିର କାର୍ଯ୍ୟରେ ସନ୍ତୁଷ୍ଟ ହୋଇ ବହୁତ ପୁରସ୍କାର ଦେଲା ଓ କହିଲା, "ଏଥର ଆମେ ଭାରତବର୍ଷ ଅଧିକାର କରିବା ।"

ଏଥି ମଧ୍ୟରେ ଭାରତବର୍ଷର ରାଜା ଗୁପ୍ତରେ ସବୁ ଖବର ରଖୁଥିଲେ । ସେ ସାଇମନର ବନ୍ଧୁକ, କମାଣ ଭଳି ଅସ୍ତ୍ର ଶସ୍ତ୍ର ଛଡ଼ା ଆଉ କେତେକ ନୂଆ ଧରଣର ମାରଣାସ୍ତ୍ର ତିଆରି କରିଥିଲେ । ସେ ସାଇମନ ପରି ସବୁ ଯୁବକଙ୍କୁ ଯୁଦ୍ଧ କରିବାକୁ ଶିକ୍ଷା ଦେଇଥିଲେ । ତାହା ଛଡ଼ା ତାଙ୍କର ଗୋଟିଏ ନାରୀ ସୈନ୍ୟଦଳ ମଧ୍ୟ ଥିଲା । ସେ ଏକ ପ୍ରକାର ଉଡ଼ାଜାହାଜ ତିଆର କରିଥିଲେ । ଏଥିରେ ବସି, ଜଣେ ଦୁଇ ଜଣ ସୈନ୍ୟ ବୋମା ପକାଇ ସହସ୍ର ସହସ୍ର ଶତ୍ରୁ ବଧ କରିପାରିବେ ।

ସାଇମନ ଭାବିଥିଲା ସେ ଭାରତର ରାଜାଙ୍କୁ ଅନ୍ୟ ରାଜା ଭଳି ସହଜରେ ପରାସ୍ତ କରି ରାଜ୍ୟ ଅଧିକାର କରିବ । କିନ୍ତୁ ତାର ସୈନ୍ୟମାନେ ଭାରତରେ ପ୍ରବେଶ କଲାକ୍ଷଣି ଭାରତ ରାଜାଙ୍କର ନାରୀ ସୈନ୍ୟମାନେ ଉଡ଼ାଜାହାଜରେ ଆସି ସେମାନଙ୍କ ଉପରେ ବୋମା ଫିଙ୍ଗିଲେ । ସାଇମନର ବହୁତ ସୈନ୍ୟ ମଲେ ଓ ଅନ୍ୟମାନେ ପଳାଇଗଲେ । ଭାରତର ରାଜା ସାଇମନର ରାଜ୍ୟ ଅଧିକାର କଲେ । ସାଇମନ କୌଣସି ମତେ ପଳାଇ ଯାଇ ଆପଣା ଜୀବନ ରକ୍ଷା କଲା ।

ଭୂତ ସରଦାର ଏହିପରି ସାଇମନର ସର୍ବନାଶ କରି ତରାସ ପାଖକୁ ଗଲା । ଏଥର ସେ ଅନ୍ୟ ଏକ ଉପାୟ କଲା । ଜଣେ ଧନୀ ବ୍ୟବସାୟୀ ବେଶରେ ସେ ତରାସର ରାଜ୍ୟରେ ବାସକଲା ଓ ବହୁତ ଟଙ୍କା ପଇସାର କାରବାର ଚଳାଇଲା । ସେ ଅପର୍ଯ୍ୟାପ୍ତ ଟଙ୍କା ଖରଚ କରୁଥାଏ । ଯିଏ ଯାହା ଆଣିଲା ସେ ତାହା କିଣୁଥିଲା ଓ ବହୁତ ଦାମ୍ ଦେଉଥିଲା । ଲୋକେ ଟଙ୍କା ଲୋଭରେ ଏହି ନୂଆ ବେପାରୀ ପାଖକୁ ଦୌଡ଼ିଲେ । କିଏ ଜିନିଷ ବିକି କିଏ ବା କାମ କରି ତାହାଠାରୁ ଯଥେଷ୍ଟ ଟଙ୍କା ପାଇଲେ । ଏଣିକି ସେମାନେ ଅକ୍ଳେଶରେ ରାଜାଙ୍କ ଖଜଣା ଦେଇପାରିଲେ । ତରାସକୁ ଆଉ ଲୋକଙ୍କ ଖଜଣା ଆଦାୟ କରିବାକୁ କଷ୍ଟ ପଡ଼ୁନାହିଁ । ସେ ମନେ ମନେ ଆନନ୍ଦିତ ହେଲା ।

ତରାସ କପରି ଆହୁରି ସୁଖରେ ରହିବ, ଆହୁରି ମଉଜ ମଜଲିସ କରି-ପାରିବ, ତାହା ଚନ୍ତାକଲା । ପ୍ରଥମେ ସେ ଗୋଟିଏ ନୂଆ ରାଜପ୍ରାସାଦ ତିଆରି କରିବାକୁ ବସିଲା । ସେ କାଠ, ପଥର ପ୍ରଭୃତି କିଣିବା ପାଇଁ ଓ ମଜୁରି ପାଇଁ ବହୁତ ଟଙ୍କା ଯାଚିଲା । କିନ୍ତୁ ଯେତେ ଟଙ୍କା ଯାଚିଲେ ସୁଦ୍ଧା କେହି ତାକୁ କାଠ ପଥର ବିକିବା ପାଇଁ ଆସିଲେ ନାହିଁ; କୌଣସି କାରିଗର ମଧ୍ୟ କାମ କରିବାକୁ ମିଳିଲେ ନାହିଁ । ସମସ୍ତେ ନୂଆ ବେପାରି ପାଖରେ ହାଜର । ସବୁ ଜିନିଷ ତା ହାତରେ । ତରାସର ନୂଆ ଘରଆସ ତିଆରି ହୋଇପାରିଲା ନାହିଁ ।

ରାଜା ତରାସ ଗୋଟାଏ ସୁନ୍ଦର ବଗିଚା କରିବାକୁ ମନ କଲା । ଗଛ ଲଗାଇବା ପାଇଁ ତାକୁ ଲୋକ ମିଳିଲେ ନାହିଁ । ସେ ଯେତେ ମଜୁରି ଦେବାକୁ କହିଲା ତହିଁରୁ ଅଧିକ ଦେଇ ବେପାରି ସେମାନଙ୍କୁ କାମରେ ଲଗାଇଲା ।

ଶୀତଦିନେ ଲୋମର ଗୋଟିଏ କୁରୁତା କରିବା ପାଇଁ ତରାସ ଲୋମ କିଣିବାକୁ ଲୋକ ପଠାଇଲା । କିନ୍ତୁ କୌଣସିଠାରେ ଲୋମ ମିଳିଲା ନାହିଁ । ନୂଆ ବେପାରୀ ସବୁ ଲୋମ ଆଗରୁ କିଣିନେଇଥିଲା ।

ତରାସ କେତୋଟି ଭଲ ଘୋଡ଼ା କିଣିବାକୁ ଲୋକ ପଠାଇଲା । କିନ୍ତୁ ସେମାନେ ହତାଶ ହୋଇ ଫେରିଆସି କହିଲେ, "କାହାରି ପାଖେ ଭଲ ଘୋଡ଼ା ନାହିଁ । ସେ ନୂଆ ବେପାରୀ ସବୁ କିଣି ନେଇ ରଖିଛି ।"

ଏହିପରି ତରାସ ରାଜା ହୋଇଥିଲେ ମଧ୍ୟ ପ୍ରତ୍ୟେକ କାମରେ ଅସୁବିଧାରେ ପଡ଼ିଲା । ତାର ଚାକର ବାକର ସୁଦ୍ଧା ତାକୁ ଛାଡ଼ି ବେପାରୀ ପାଖକୁ ଚାଲିଗଲେ । ତାହାଠାରୁ ଟଙ୍କା ଆଣି ଲୋକଙ୍କୁ ଖଜଣା ଦେଇ ପକାଉଥିଲେ ।

ରଜାର ଭଣ୍ଡାରରେ ଏତେ ଟଙ୍କା ପୁଣି ଜମା ହୋଇଗଲା ଯେ ରଖିବାକୁ ଜାଗା ହେଲା ନାହିଁ । ତଥାପି ତାର ଜୀବନରେ ଟିକିଏ ହେଲେ ସୁଖ ନଥିଲା । ସେ ଆଉ ମଉଜ ମଜଲିସ କରିବା କଥା ଚିନ୍ତା କଲା ନାହିଁ । ତାର ଏକମାତ୍ର ଚିନ୍ତା ହେଲା କିପରି ପ୍ରାଣେ ବଞ୍ଚି ରହିବ ।

ତାର ଘୁଷୁରି, ଘୃଷ୍ଣାଣ୍ଡ, କୋଚମାନ ପ୍ରଭୃତି ତାକୁ ଛାଡ଼ି ପଳାଇଲେ । ଶେଷରେ ଅବସ୍ଥା ଏପରି ହେଲା ଯେ ତାକୁ ଖାଇବାକୁ ମୁଠା ମିଳିଲା ନାହିଁ । ବଜାରରୁ କିଛି ଖାଇବା ଜିନିଷ ଆଣିବାକୁ ଯାଇ ସେ କିଛିମାତ୍ର ପାଇଲା ନାହିଁ; ଶୁଣିଲା ଯେ ସବୁ ବେପାରୀ କିଣିନେଇଛି ।

ଶେଷରେ ତରାସ ବେପାରୀଙ୍କୁ ରାଜ୍ୟରୁ ତଡ଼ିଦେଲା । ବେପାରୀ ତାର ଟଙ୍କା ସୁନା ଓ ଜିନିଷ ନେଇ ତରାସର ରାଜ୍ୟ ସୀମା ପାଖରେ ରହିଲା । ପ୍ରଜାପରି ସମସ୍ତେ ତା ପାଖକୁ ଗଲେ; ରଜାକୁ କେହି ପଚାରିଲେ ନାହିଁ ।

ତରାସ ଏକାଦିକ୍ରମେ ଦୁଇଦିନ ଉପାସ ରହିଲା । ଶୁଣାଗଲା ଯେ ବେପାରୀ କହୁଛି, "ରଜା ତରାସକୁ ମୁଁ କିଣିନେବି ।" ତରାସର ଖୁବ୍ ଭୟ ହୋଇଗଲା । କଅଣ କରିବ ତାକୁ ବୁଦ୍ଧି ଦିଶିଲା ନାହିଁ । ଏହି ସମୟରେ ସାଇମନ ଆସି ତରାସ ପାଖରେ ପହଞ୍ଚି କହିଲା, "ଭାଇ ତରାସ, ଭାରତର ରାଜା ମୋର ରାଜ୍ୟ ଅଧିକାର କରିନେଇଛି । ମୁଁ ଜୀବନ ଘେନି ପଳାଇ ଆସିଛି । ତୁମେ ମୋତେ ସାହାଯ୍ୟ କର ।"

ତରାସ ଉତ୍ତର କଲା, "ଭାଇ, ମୁଁ କି ସାହାଯ୍ୟ କରିବି ? ମୋ କଥା କହିଲେ ନ ସରେ । ଦୁଇଦିନ ହେଲା ମୋ ପେଟରେ ଦାନା ପଡ଼ିବାକୁ ନାହିଁ ।"

## ୧୧

ଭୂତ ସରଦାର ଏହିପରି ଦୁଇଭାଇଙ୍କର ସର୍ବନାଶ କରି ଅଇଭାନ ପାଖକୁ ଚଳିଲା । ଏଥର ସେ ଜଣେ ସେନାପତି ବେଶରେ ଯାଇଥିଲା । ସେ ଅଇଭାନକୁ କହିଲା, "ଆପଣ ଜଣେ ରାଜା; ଆପଣ ଗୋଟିଏ ବଡ଼ ସୈନ୍ୟଦଳ ରଖିବା ଦରକାର । ମୋତେ ଆଦେଶ ଦେଲେ ରାଜ୍ୟରୁ ସୈନ୍ୟ ସଂଗ୍ରହ କରି ଗୋଟିଏ ବଡ଼ ସୈନ୍ୟଦଳ ଗଢ଼ିଦେବି ।"

ଅଇଭାନ ଏ ପ୍ରସ୍ତାବ ଶୁଣି କହିଲା, "ସୈନ୍ୟ ସଂଗ୍ରହ କରି ଗୋଟିଏ ବଡ଼ ସୈନ୍ୟଦଳ ଗଠନ କର । କିନ୍ତୁ ସେମାନଙ୍କୁ ଭଲ ଗୀତ ଗାଇବାକୁ ଓ ବାଦ୍ୟ ବଜାଇବାକୁ ଶିଖାଇଦେବ । ସୈନ୍ୟମାନଙ୍କର ଗୀତବାଦ୍ୟ ଶୁଣିବାକୁ ମତେ ଭଲଲାଗେ ।"

ଭୂତ ସରଦାର ସେନାପତି ବେଶରେ ରାଜ୍ୟଯାକ ବୁଲି ଲୋକମାନଙ୍କୁ ବୁଝାଇଲା, "ତୁମେମାନେ ସୈନ୍ୟଦଳରେ ଯୋଗଦଅ । ତୁମମାନଙ୍କୁ ଭଲ ମଦ ପିଇବାକୁ ଦଆଯିବ; ମୁଣ୍ଡରେ ପିନ୍ଧିବାକୁ ନାଲି ଟୋପି ମିଳିବ ।"

ଲୋକମାନେ ଉତ୍ତର କଲେ, "ଆମେ ଘରେ ଘରେ ମଦ ତିଆରି କରି ପିଉଛୁ । ଆମ ଘରର ସ୍ତ୍ରୀ ଲୋକେ ସୁନ୍ଦର ଟୋପି ତିଆରି କରିଦେଉଛନ୍ତି । ଆମେ ସୈନ୍ୟ ହେବାକୁ ଯିବୁ କାହିଁକି ?"

କେହି ସୈନ୍ୟ ବିଭାଗରେ ଯୋଗ ଦେବାକୁ ରାଜି ନ ହେବାରୁ ସେନାପତି ଫେରି ଆସି କହିଲା, "ଏ ରାଜ୍ୟର ଲୋକଗୁଡ଼ାକ ନିର୍ବୋଧ । ସେମାନେ ସୈନ୍ୟ ହେବାକୁ ମନାକରୁଛନ୍ତି । ସେମାନଙ୍କୁ ସୈନ୍ୟ ହେବା-ପାଇଁ ବାଧ୍ୟ କରିବାକୁ ହେବ ।"

ଆଇଭାନ କହିଲା, "ହେଉ, ତୁମେ ଚେଷ୍ଟା କରି ଦେଖ ।"

ତହୁଁ ସେନାପତି ଲୋକଙ୍କୁ ଜଣାଇ ଦେଲା, "ତୁମେମାନେ ରାଜ୍ୟର ସୈନ୍ୟଦଳରେ ଯୋଗ ଦେବାକୁ ବାଧ୍ୟ । ରାଜାଙ୍କର ହୁକୁମ— ଯେଉଁମାନେ ସୈନ୍ୟଦଳରେ ଯୋଗ ନ ଦେବେ ସେମାନଙ୍କୁ ହତ୍ୟା କରାଯିବ ।"

ଲୋକେ ଆସି ସେନାପତିକୁ ପଚାରିଲେ, "ଆମେ ସୈନ୍ୟ ଦଳରେ ନ ରହିଲେ ଆମକୁ ରାଜା ମାରିପକାଇବେ ବୋଲି କହୁଛ । କିନ୍ତୁ ସୈନ୍ୟ ଦଳରେ ଯୋଗଦେଲେ ଆମର କଅଣ ହେବ, କହୁନାହଁ । ଆମେ ଶୁଣିଛୁ ଯେ ସୈନ୍ୟମାନେ ଯୁଦ୍ଧରେ ମରନ୍ତି !"

ସେନାପତି କହିଲା, "ହଁ, ବେଳେବେଳେ ସୈନ୍ୟମାନେ ଯୁଦ୍ଧରେ ମରନ୍ତି ।"

ଏହା ଶୁଣି ଲୋକେ ଜିଦ୍ କରି କହିଲେ, "ତାହାହେଲେ ଆମେ ସେ ସୈନ୍ୟଦଳରେ ମିଶିବୁ ନାହିଁ । ସୈନ୍ୟହେଲେ ମରିବୁ—ନଗଲେ ରାଜା ହାତରେ ମରିବୁ—ଯେମିତି ହେଉ ମରିବାର କଥା । ଯୁଦ୍ଧକରିବାକୁ ଯାଇ ମରିବାଠାରୁ ଘରେ ମରିବା ଭଲ ।"

ସେନାପତି କହିଲା, "ତୁମେ ସବୁ ଗଜମୂର୍ଖ । କିଛି ବୁଝିପାରୁନାହଁ । ସୈନ୍ୟ ହେଲେ ତୁମେ ମରିପାର; ମରି ନପାର ମଧ୍ୟ । କିନ୍ତୁ ସୈନ୍ୟ ନ ହେଲେ ରାଜା ନିଶ୍ଚୟ ତୁମକୁ ମାରିପକାଇବ ।"

ଲୋକେ ଏକଥା ବୁଝି ପାରିଲେ ନାହିଁ । ସେମାନେ ରାଜା ଆଇଭାନଙ୍କୁ ପଚାରିବା ପାଇଁ ଗଲେ । ସେମାନେ କହିଲେ, "ତୁମର ଜଣେ ଜଣେ ସେନାପତି ଯାଇ ଆମକୁ ସୈନ୍ୟ ହେବା ପାଇଁ କହୁଛି । ସେ କହେ ଯେ ଆମେ ସୈନ୍ୟଦଳରେ ଯୋଗ ଦେଲେ ମରିପାରୁଁ, ମରି ନପାରୁଁ ମଧ୍ୟ; କିନ୍ତୁ ଯୋଗ ନ ଦେଲେ ତୁମେ ନିଶ୍ଚୟ ଆମକୁ ମାରିପକାଇବ । ଏକଥା ସତ କି ନା ବୁଝିବାକୁ ଆମେ ଆସିଛୁ ।"

ଆଇଭାନ ହସି ହସି କହିଲା, "ମୁଁ ଜଣେ ମଣିଷ । ମୁଁ ଏକୁଟିଆ ଏତେ ଲୋକଙ୍କୁ ମାରି ପାରିବି କିପରି ? ମୁଁ ବି ତୁମର ଭଳି ନିର୍ବୋଧ । ସତ କଥା ହେଉଛି, ମୁଁ ନିଜେ ଏ ହୁକୁମରୁ କିଛି ବୁଝିପାରୁନାହିଁ ।"

"ତେବେ ଆମେ ସୈନ୍ୟ ହେବାକୁ ଯିବୁ ନାହିଁ ?"

"ଭଲକଥା, ନଯାଅ ।"

ଲୋକେ ଫେରିଯାଇ ସେନାପତିକୁ କହିଲେ, "ନା ଆମେ ସୈନ୍ୟ ହେବାକୁ ଯିବୁନାହିଁ ।"

ଭୂତ ସରଦାର ଦେଖିଲା, ଏଠାରେ ତାର କୌଣସି ଉପାୟ କାମ ଦେଖାଉ ନାହିଁ । ସେ ଅନ୍ୟ ଏକ ଉପାୟ ସ୍ଥିର କଲା । ସେ ଆଇଭାନର ରାଜ୍ୟ ପାଖରେ ଥିବା ଟାରାକାନ ରାଜ୍ୟର ରାଜାଙ୍କ ଆଶ୍ରୟ ନେଲା । ସେ ଦେଶର ରାଜାଙ୍କୁ ସେ ଶିକ୍ଷା ଦେଲା, "ଆମେ ଆଇଭାନର ରାଜ୍ୟକୁ ଆକ୍ରମଣ କରି ଅଧିକାର କରିନେବା । ଅବଶ୍ୟ ସେ ରାଜ୍ୟରେ ଟଙ୍କା ପଇସା ନାହିଁ; କିନ୍ତୁ ଯଥେଷ୍ଟ ଖାଦ୍ୟଶସ୍ୟ ଓ ଗୋରୁଗାଈ ପ୍ରଭୃତି ଗୃହପାଳିତ ଜନ୍ତୁ ଅଛନ୍ତି ।"

କନୋଚଲଣ୍ଡର ରାଜା ଏହି ପ୍ରସ୍ତାବରେ ରାଜି ହେବାରୁ ସେନାପତି ଯୁଦ୍ଧର ଆୟୋଜନ କଲା । ରାଜା ବିରାଟ ସୈନ୍ୟଦଳ, ବନ୍ଧୁକ, କମାଣ ପ୍ରଭୃତି ନେଇ ଆଇଭାନର ରାଜ୍ୟରେ ପ୍ରବେଶକଲେ ।

ଲୋକେ ଯାଇ ଆଇଭାନକୁ କହିଲେ, "କନୋଚଲଣ୍ଡର ରାଜା ଆମ ରାଜ୍ୟରେ ପଶି ଆମ ସଙ୍ଗେ ଯୁଦ୍ଧ କରିବାକୁ ଆସିଛନ୍ତି ।"

"ଆସିଛନ୍ତି ତ ଆସନ୍ତୁ !"

କନୋଚଲଣ୍ଡର ରାଜା ଆଇଭାନର ରାଜ୍ୟର ସୀମାରେ ପ୍ରବେଶ କରି ଶତ୍ରୁର ସୈନ୍ୟସଂଖ୍ୟା ଜାଣିବା ପାଇଁ ଗୁପ୍ତଚରମାନଙ୍କୁ ପଠାଇଲା । ସେମାନେ ଖୋଜି ଖୋଜି କୌଣସି ସୈନ୍ୟ ଦେଖି ପାରିଲେ ନାହିଁ । ଶତ୍ରୁ ସୈନ୍ୟର ଦେଖାନାହିଁ, ସେମାନେ କାହା ସାଥିରେ ଯୁଦ୍ଧ କରିବେ । ବୁଝିପାରିଲେ ନାହିଁ । ତହୁଁ କନୋଚଲଣ୍ଡର ରାଜା ତାର ସୈନ୍ୟମାନଙ୍କୁ କହିଲା, "ତୁମେମାନେ ଗ୍ରାମମାନଙ୍କରେ ପଶି ଲୁଟତରାଜ କର । ସୈନ୍ୟମାନେ ଗ୍ରାମରେ ପଶିବାରୁ ଲୋକେ ଆଶ୍ଚର୍ଯ୍ୟ ହୋଇ ଘରୁ ବାହାରି ଆସି ସେମାନଙ୍କ ପୋଷାକ ଓ ହାତହତିଆରକୁ ଚାହିଁରହିଲେ । ସୈନ୍ୟମାନେ ଗ୍ରାମର ଘରେ ଘରେ ପଶି ଶସ୍ୟ ଓ ଗୋରୁ ମେଣ୍ଢା ପ୍ରଭୃତି ନେଇ ଗଲେ; କିନ୍ତୁ କେହି ସେମାନଙ୍କୁ ବାଧା ଦେଲେ ନାହିଁ । ସେମାନେ ଗ୍ରାମ ପରେ ଗ୍ରାମକୁ ଯାଇ ଏହିପରି ଲୁଟିକଲେ; କିନ୍ତୁ କୌଣସିଠାରେ ସେମାନଙ୍କୁ କେହି ବାଧା ଦେଲା ନାହିଁ । ଦିନେ ଗଲା, ଦୁଇଦିନ ଗଲା, ତିନିଦିନ ଗଲା ; ପ୍ରତିଦିନ ସେଇ ଏକ କଥା; ସୈନ୍ୟମାନେ ଲୁଟି କରୁଥାନ୍ତି, କେହି ସେମାନଙ୍କୁ ବାଧା ଦିଅନ୍ତି ନାହିଁ; ବରଂ ଅନେକ କହନ୍ତି, "ତୁମେମାନେ ଆସି ଆମ ଘରେ ରହ । ତୁମ ଦେଶରେ ବୋଧହୁଏ ବେଶି ଫସଲ ହୋଇନାହିଁ । ଆସ, ଆମର ଯାହା ଅଛି ସେଥିରେ ତୁମେମାନେ ମଧ୍ୟ ଚଳିପାରିବ ।"

ସୈନ୍ୟମାନେ ଆଇଭାନର ରାଜ୍ୟ ଭିତରକୁ ଆଗେଇ ଚାଲିଲେ; କିନ୍ତୁ କୌଣସିଠାରେ ଶତ୍ରୁ ସୈନ୍ୟଙ୍କର ଦେଖା ମିଳିଲାନାହିଁ । ଯେଉଁଠାକୁ ଗଲେ ସେଠାରେ ଲୋକେ ଖାଇପିଇ ସୁଖରେ ଥିବାର ଦେଖିଲେ । ସେମାନଙ୍କୁ ଲୋକେ ନିମନ୍ତ୍ରଣ କରି ସେଠାରେ ରହିବାକୁ କହିଲେ । ସୈନ୍ୟମାନେ ଲଢ଼େଇ କରିବାର ସୁବିଧା ନପାଇ ଫେରିଆସି କନୋଚଲଣ୍ଡର ରଜାକୁ କହିଲେ, "ଆମକୁ ଅନ୍ୟ କୁଆଡ଼େ ନିଅ । ଆମେ ଏଠାରେ ଯୁଦ୍ଧ କରିବାର କିଛି ସୁଯୋଗ ପାଉନାହିଁ । ଏଠି ଯାହା ଦେଖୁଛୁ, ସେଥିରେ ଯୁଦ୍ଧ କରିବା ଅସମ୍ଭବ ।"

କନୋଚଲଣ୍ଡର ରାଜା ସବୁ ଶୁଣି ବିରକ୍ତ ହୋଇ କହିଲା, "ଆରେ, ତୁମେମାନେ ସେମାନଙ୍କ ଘର ଲୁଟିକଲେ ସେମାନେ ବାଧା ଦେଉନାହାନ୍ତି ? ତାହାହେଲେ ତୁମେମାନେ ଯାଇ ସେମାନଙ୍କ ଘରଦ୍ୱାର ପୋଡ଼ି ଜାଳି ନଷ୍ଟ

କରିଦଅ । ଗ୍ରାମରେ ଯେତେ ଘୋଡ଼ା, ଗୋରୁ, ମେଣ୍ଢା ଦେଖୁଛ ସେମାନଙ୍କୁ ମାରିଦଅ । ଦେଖ, ମୋ ହୁକୁମ ଅନୁସାରେ କାମ ନକଲେ ତୁମମାନଙ୍କୁ ପ୍ରାଣଦଣ୍ଡ ଦିଆଯିବ ।''

ସୈନ୍ୟମାନେ ରଜାର କଥା ମାନି ଗାଁ ଗାଁ ପୋଡ଼ି ଜାଳିଦେଲେ; ଯେତେ ଘୋଡ଼ା, ମେଣ୍ଢା, ଗାଈ ଦେଖିଲେ ସେମାନଙ୍କୁ ମାରି ଫିଙ୍ଗିଦେଲେ । ତଥାପି କେହି ସୈନ୍ୟମାନଙ୍କୁ ବାଧା ଦେଲେ ନାହିଁ । ସେମାନେ ଦଳ ଦଳ ହୋଇ କାନ୍ଦି କାନ୍ଦି ସୈନ୍ୟମାନଙ୍କୁ କହିଲେ, ''ତୁମେମାନେ ଆମର ଏତେ କ୍ଷତି କରୁଛ କାହିଁକି ? ଏସବୁ ଦରକାରୀ ଜିନିଷଗୁଡ଼ାକ ପୋଡ଼ି ନଷ୍ଟ କରି ଦେଉଛ କାହିଁକି ? ତୁମର ଦରକାର ଥିଲେ ଏସବୁ ନେଇଯାଅ । ବୃଥା ନଷ୍ଟ କରନାହିଁ ।''

ସୈନ୍ୟମାନଙ୍କୁ ଏଭଳି ଅତ୍ୟାଚାର କରିବାଟା ବଡ଼ ଖରାପ ଲାଗି ନିରୀହ ଲୋକଙ୍କର ଅନିଷ୍ଟ କରିବାକୁ ସେମାନଙ୍କ ମନ ଡାକିଲା ନାହିଁ । ସେମାନେ ଦଳଛାଡ଼ି କିଏ କୁଆଡ଼େ ଚାଲିଗଲେ

## ୧୨

ଭୂତ ସରଦାରର ବୁଦ୍ଧି ହଜିଗଲା । ସୈନ୍ୟମାନଙ୍କ ସାହାଯ୍ୟରେ ଆଇଭାନକୁ ଆୟତ୍ତ କରିବାର ଆଶା ରହିଲା ନାହିଁ । ସେ ଅନ୍ୟ କୌଶଳର ଆଶ୍ରୟ ନେବାକୁ ସ୍ଥିର କଲା । ପୂର୍ବ ଭଳି ସେ ଜଣେ ବଣିକ ବେଶରେ ଯାଇ ଆଇଭାନର ରାଜ୍ୟରେ ରହିଲା । ସେ ଆଇଭାନକୁ କହିଲା, ''ମୁଁ ତୁମ ରାଜ୍ୟରେ ଘରକରି ରହିବି । ତୁମ ଲୋକମାନଙ୍କର ବୁଦ୍ଧିର ଅଭାବ । ମୁଁ ଏଠାରେ ବ୍ୟବସାୟ ବାଣିଜ୍ୟ କରିବି । ସେଥିରୁ ସେମାନେ ଅନେକ କଥା ଶିଖି-ପାରିବେ, ସେମାନଙ୍କର ଉପକାର ହେବ ।''

ଆଇଭାନ କହିଲା, ''ଭଲ କଥା; ତୁମେ ଯେବେ ଚାହୁଁଛ ଏଠାରେ ଅସି ରହ । ଯାହା କରିବାର କର ।''

ପରଦିନ ସକାଳେ ଭୂତ ସରଦାର ଜଣେ ଭଦ୍ରଲୋକ ବେଶରେ ସହରର ଏକ ଛକ ଜାଗାକୁ ଗଲା । ସାଥିରେ ବସ୍ତାଏ ସୁନା ମୋହର ଓ

ଟଙ୍କା କାଗଜ ନେଇଥାଏ । ସେ ଚିତ୍କାର କରିବାକୁ ଲାଗିଲା, "ତୁମେ-ମାନେ ଘୁଷୁରି ଭଳି ହୀନ ଜୀବନ ଯାପନ କରୁଛ । ଉପରେ ବଞ୍ଚିବାକୁ ହୁଏ ମୁଁ ତୁମମାନଙ୍କୁ ଶିକ୍ଷା ଦେବାକୁ ଇଚ୍ଛା କରେ । ଏଇ କାଗଜରେ ଗୋଟିଏ ନକ୍ସା ଅଛି, ସେହି ନକ୍ସା ଅନୁସାରେ ମୋ ପାଇଁ ଗୋଟିଏ ଘର ତିଆରି କରିଦିଅ । ତୁମେମାନେ କାମ କରିବ; ଉପରେ କେଉଁ କାମ କରିବ ମୁଁ ବତେଇ ଦେବି । ସେହି କାମ ପାଇଁ ମୁଁ ତୁମମାନଙ୍କୁ ସୁନା ମୋହର ଦେବି ।" ଏହା କହି ସେ ଲୋକମାନଙ୍କୁ ସୁନାର ମୋହର ଦେଖାଇ ଦେଲା ।

ଲୋକମାନଙ୍କ ଭିତରେ ଟଙ୍କା ସୁନାର କାରବାର ନଥିଲା । ସେମାନେ ଆପଣା ଭିତରେ କେବଳ ଜିନିଷ ବଦଳ କରି ଚଳୁଥିଲେ । ଜଣେ ଆଉ ଜଣକପାଇଁ କିଛି କାମ କଲେ ଅନ୍ୟ ଜଣକ ତାହାପାଇଁ କାମ କରୁଥିଲା । ତେଣୁ ସେମାନେ ଏହି ଭଦ୍ରଲୋକର କଥା ଶୁଣି ଓ ତାର ସୁନା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ ।

ସେମାନେ କହିଲେ, "ବାଃ, ଏଗୁଡ଼ିକ କେଡ଼େ ସୁନ୍ଦର ଦିଶୁଛି ?"

ଲୋକେ ଏହି ଭଦ୍ରଲୋକକୁ ଜିନିଷ ଦେଇ ଓ ତା ପାଇଁ କାମକରି ତାଠାରୁ ସୁନାମୋହର ନେଲେ । ତଗ୍‌ସର ରାଜ୍ୟରେ ସେ ଯେପରି କରିଥିଲା, ଏଠାରେ ମଧ୍ୟ ସେହିପରି ସେ ଅକାତରରେ ମୋହର ଖର୍ଚ୍ଚ କରିବାରେ ଲାଗିଲା । ଲୋକେ ମଧ୍ୟ ତା ପାଖରେ ସବୁ ଜିନିଷ ଜମା କରିଦେଲେ; ତାର ସବୁ କାମ କଲେ । ତା ବଦଳରେ ପାଇଲେ ସୁନା ।

ଭୂତସରଦାର ଆନନ୍ଦିତ ହୋଇ ଭାବିଲା, "ଏବେ ମୋ କାମ ବାଟକୁ ଆସିଲା । ତଗ୍‌ସ ଭଳି ଏ ନିର୍ବୋଧ ମଧ୍ୟ ମୋର କରଗତ ହୋଇ ପାପରେ ବୁଡ଼ିବ ।"

ଲୋକେ ମୋହର ନେଇ ସେମାନଙ୍କ ସ୍ତ୍ରୀମାନଙ୍କୁ ଦେଲେ । କେହି ମୋହର ମାଳକରି ବେକରେ ପିନ୍ଧିଲା; ଝିଅମାନେ ମୁଣ୍ଡ ବେଣୀରେ ମୋହର ଖୋସିଲେ । ଛୋଟ ପିଲାମାନେ ମୋହର ନେଇ ଦାଣ୍ଡରେ ଖେଳିଲେ । ପ୍ରତ୍ୟେକ ଲୋକ ପାଖରେ ଏତେ ସୁନା ହୋଇଗଲା ଯେ କେହି ଆଉ ସୁନା ନେବାକୁ ଚାହିଁଲା ନାହିଁ । ଏତେବେଳଯାଏ ସେ ଭଦ୍ରଲୋକର ଘର ତିଆରି

ଘର ନ ଥିଲା; ବର୍ଷକ ଯାଏଁ ପାଇଁ ଖାଦ୍ୟଦ୍ରବ୍ୟ ରହି ନ ଥିଲା । ଗୋରୁଗାଈଙ୍କ ପାଇଁ ପାଳ ମଧ୍ୟ ସଂଗୃହୀତ ହୋଇ ନ ଥିଲା । ଶସ୍ୟ, ନଡ଼ା ପ୍ରଭୃତି କିଣିବା-ପାଇଁ ଓ ତାର କାମ କରିବା ପାଇଁ ସେ ଆହୁରି ସୁନା ଦେବ ବୋଲି କହିଲା; କିନ୍ତୁ କେହି ତାକୁ କୌଣସି ଜିନିଷ ଦେଲେ ନାହିଁ କି ତାର କାମ କଲେ-ନାହିଁ । ବେଳେ ବେଳେ କୌଣସି ପିଲା ଗୋଟାଏ ଦୁଇଟା ଅଣ୍ଡା ଦେଇ ତାଠାରୁ କେତେଟା ମୋହର ନେଉଥିଲେ ।

ଶେଷରେ ତାକୁ କୌଣସି ଖାଇବା ଜିନିଷ ମିଳିଲା ନାହିଁ । ଟେଭକରେ ଅଥୟ ହୋଇ ସେ ସହର ଗ୍ରାମ୍ୟ ମଫସଲ ଗାଁମାନଙ୍କୁ ଗଲା । ଗୋଟାଏ ଗାଁରେ ପହଞ୍ଚି ଜଣେ ସ୍ତ୍ରୀ ଲୋକଠାରୁ ଗୋଟିଏ କୁକୁଡ଼ା କିଣିବାକୁ ଚାହିଁଲା ଓ ସେଥିପାଇଁ ଗୋଟିଏ ମୋହର ଯାଚିଲା; କିନ୍ତୁ ସ୍ତ୍ରୀ ଲୋକଟି କହିଲା, "ଆମେ ଖାଇବା ଜିନିଷ ବିକ୍ରୀ କରୁନାହିଁ । ଆମ ଘରେ ବହୁତ ସୁନା ମୋହର ଅଛି । ଆମର ମୋହର ଲୋଡ଼ା ନାହିଁ ।

ତହୁଁ ସେ ଆଉ ଜଣେ ସ୍ତ୍ରୀ ଲୋକ ପାଖକୁ ଯାଇ ଖଣ୍ଡେ ରୁଟି ପାଇଁ ମୋହରଟିଏ ଯାଚିଲା । ସେ କହିଲା, "ମୋର ଏ ସୁନା ମୋହର କଅଣ ହେବ ? ମୋର ପିଲାଙ୍କ ନାହାନ୍ତି ଯେ ଖେଳିବେ । ଗୋଟାଏ ଅଚିହ୍ନ ଜିନିଷ ବୋଲି ମୁଁ ତିନି ଚାରିଟା ମୋହର ଘରେ ରଖିଛି । କିନ୍ତୁ ମୋହରରେ କିଛି କାମ ହେବନାହିଁ ।"

ଜଣେ କୃଷୀ ଘରକୁ ଯାଇ ସେ ଖଣ୍ଡେ ରୁଟି କିଣିବାର ଚେଷ୍ଟା କଲା । କିନ୍ତୁ କୃଷୀ ମୋହର ନେବାକୁ ମନା କରି ଦେଇ କହିଲା, "ମୋର ମୋହରରେ ଦରକାର ନାହିଁ । ମୁଁ ରୁଟି ବିକି ପାରିବ ନାହିଁ । ଯଦି ତୁମେ ଈଶ୍ୱରଙ୍କ ନାମରେ ଭିକ୍ଷା କରୁଥାଅ, ତେବେ ମୁଁ ତୁମକୁ ଖଣ୍ଡେ ରୁଟି ଦେଇପାରେଁ ।"

ଭୂତ ସରଦାର ଈଶ୍ୱରଙ୍କୁ ମାନେ ନାହିଁ । ସେ ସବୁବେଳେ ଈଶ୍ୱର-ଙ୍କର ବିରୋଧୀ । ତେଣୁ ଈଶ୍ୱରଙ୍କ ନାମ ଶୁଣିଲାକ୍ଷଣି ସେ ପଳାଇଗଲା । ତାର ମନେ ହେଲା ଯେପରି ଅବା ଗୋଟାଏ ଛୁରି ତା ଗ୍ରୀବରେ ଭୁସି ହୋଇଗଲା ।

ଭୂତ ସରଦାର ଅନେକ ଜାଗାରେ ଚେଷ୍ଟାକଲା; କିନ୍ତୁ କେହି ସୁନା ନେଇ ତାକୁ କିଛି ଖାଇବା ଜିନିଷ ଦେଲେନାହିଁ। ସମସ୍ତେ କହିଲେ, "ଆସ ଆମ ସାଥିରେ ମିଶି କାମ କର। ତା ବଦଳରେ ଖାଅ। ନୋହିଲେ ଈଶ୍ୱରଙ୍କ ନାମରେ ଭିକ୍ଷା ମାଗିଲେ ଯାହା କିଛି ମିଳିବ।"

କିନ୍ତୁ ଭୂତ ସରଦାରର କାମ କରିବାକୁ ଇଚ୍ଛା ନ ଥିଲା; କିମ୍ୱା ତାର ବିରୋଧୀ ଈଶ୍ୱରଙ୍କ ନାମରେ ଭିକ୍ଷା କରିବାକୁ ଇଚ୍ଛୁ ନଥିଲା। ତାର ଏକମାତ୍ର ବଳ ଥିଲା ସୁନା। ସେ ଲୋକମାନଙ୍କୁ କହିଲା, "ମୁଁ ତୁମକୁ ଟଙ୍କା ସୁନା ଦେବାକୁ ପ୍ରସ୍ତୁତ ଅଛି; କିନ୍ତୁ ତୁମେ ତାହା ନେଉନାହଁ। ସେଥିରେ ତୁମେ ଯେ କୌଣସି ଜିନିଷ କିଣି ପାରନ୍ତ; ଯେ କୌଣସି କାମ କରାଇ ପାରନ୍ତ।"

"ନିର୍ବୋଧ" ଲୋକେ ନିଜର ଜିଦ୍ ଧରି ବସିଲେ। ତା କଥା କେହି ଶୁଣିଲେ ନାହିଁ। ସେମାନେ କହିଲେ, "ଆମର ଟଙ୍କା ସୁନା ଦରକାର ନାହିଁ। ଆମର କାହାରିକୁ ଟଙ୍କା ଦେବାର ନାହିଁ, କି ଘରକୁ ଆମେ ଟିକଶ ଦେଉନାହୁଁ। ଟଙ୍କା ସୁନା ଆମର କଅଣ ହେବ?

ଘଟଣାଟା ଆଇଭାନର କାନକୁ ଗଲା। ଲୋକେ ଯାଇ କହିଲେ, "ଜଣେ ଭଦ୍ରଲୋକ କାହୁଁ ଆସିଛି। ସେ ଭଲ ପୋଷାକ ପିନ୍ଧିବାକୁ ଓ ଭଲ ଖାଇବାକୁ ଚାହେଁ; କିନ୍ତୁ କୌଣସି କାମ କରିବାକୁ ଚାହେଁନାହିଁ। ଖାଲି ଈଶ୍ୱରଙ୍କ ନାମ ନେଇ ଭିକ୍ଷା କରିବାକୁ ମଧ୍ୟ ଚାହେଁ ନାହିଁ। ସୁନା ଦେବାକୁ କହୁଛି। ପ୍ରଥମେ ପ୍ରଥମେ ଲୋକେ ତାକୁ ଜିନିଷ ଦେଇ ଓ ତାର କାମ କରି ସୁନା ଆଣୁଥିଲେ। ଏବେ ଲୋକଙ୍କ ପାଖରେ ଯଥେଷ୍ଟ ସୁନା ହୋଇ ଗଲାଣି। କାହାରି ଆଉ ସୁନା ଲୋଡ଼ା ନାହିଁ। ଲୋକେ ତାକୁ କୌଣସି ଜିନିଷ ଦେଉ ନାହାନ୍ତି। ଏଣୁ ଦିନ ଭିତରେ ଖାଇବାକୁ ନ ପାଇ ସେ ଲୋକଟା ମରିଯିବ। ତା ପାଇଁ କଣ କରାଯିବ।"

ଆଇଭାନ ମନ ଦେଇ ସବୁ କଥା ଶୁଣିଲା। ଶେଷରେ ସେ ବହୁତ ଭାବି ଚିନ୍ତି କହିଲା, "ତାକୁ ଆମେ ବଞ୍ଚାଇବା ଦରକାର। ମେଣ୍ଢା ଜଗୁଆଳମାନେ ଯେପରି ପାଳିକରି ଜଣ ଜଣଙ୍କ ଘରେ ଖାଆନ୍ତି, ସେ ସେହିପରି ଖାଇ ବଞ୍ଚି ରହୁ।"

ଭୂତ ସରଦାରର ଅନ୍ୟ ଉପାୟ ନ ଥିଲା । ସେ ବାଧ ହୋଇ ଏହି ପ୍ରସ୍ତାବରେ ରାଜି ହେଲା ଓ ପାଳିକରି ଜଣ ଜଣଙ୍କ ଘରେ ଯାଇ ଖାଇଲା ।

ଯାଇ ଆଇଭାନ ଘରେ ତାର ଖାଇବା ପାଳି ପଡ଼ିଲା । ଖାଇଲା ବେଳକୁ ଭୂତ ସରଦାର ଭଦ୍ରଲୋକ ବେଶରେ ତା ଘରେ ପହଞ୍ଚିଲା । ଆଇଭାନର ମୂକ ବଧିର ଭଉଣୀ, ମାର୍ଥା ଖାଇବା ଜିନିଷ ସଜାଉଥିଲା । ରଜା ହେଲେ ସୁଦ୍ଧା ଆଇଭାନ କୃଷି କାମ କରୁଥିଲା; ମାର୍ଥା ନିଜ ହାତରେ ସବୁ ଘରକାମ କରୁଥିଲା । ଯେ କେହି ଖାଇବାକୁ ମାଗିଲେ ମାର୍ଥା ତାକୁ ଖାଇବାକୁ ଦେଉଥିଲା । ଏହା ଫଳରେ କେତେ ଅଳସୁଆ ଲୋକ କାମ ନ କରି ଖାଇବା ପାଇଁ ଆସୁଥିଲେ । ତେଣୁ ମାର୍ଥା ପ୍ରକୃତ ପରିଶ୍ରମୀ ଲୋକ ଓ ଅଳସୁଆ ଲୋକ ଚିହ୍ନିବା ପାଇଁ ଗୋଟାଏ ଉପାୟ ବାହାର କରିଥିଲା । ଖାଇବାକୁ ଆସୁଥିବା ଲୋକଙ୍କ ହାତ ଚିପି ସେ ଦେଖୁଥିଲା । ଯାହା ହାତରେ ବଣ୍ଡି ବସି ଯାଇଥାଏ ଓ ଟାଣୁଆ ଲାଗେ, ତାକୁ ସେ ପରିଶ୍ରମୀ ଲୋକ ବୋଲି ଜାଣି ଟେବୁଲ ପାଖରେ ବସାଏ ଓ ଭଲ ଭଲ ଜିନିଷ ଖାଇବାକୁ ଦିଏ । ଯେଉଁମାନଙ୍କ ହାତରେ ବଣ୍ଡି ନଥାଏ ଓ କଅଁଳ ଲାଗେ ସେମାନଙ୍କୁ ବଳକା ଅଇଁଠା ଖାଇବାକୁ ଦିଏ ।

ଭୂତ ସରଦାର ଖାଇବାକୁ ପହଞ୍ଚିବାରୁ ମାର୍ଥା ତାର ହାତକୁ ଟାଣି ନେଇ ପରୀକ୍ଷା କଲା । ଦେଖିଲା, ହାତରେ ବଣ୍ଡି ନାହିଁ; ଖୁବ୍ ନରମ ଲାଗୁଛି । ନଖଗୁଡ଼ାକ ଲମ୍ବା । ସେ ଗୋଟାଏ ଅଳସୁଆ ବୋଲି ଜାଣିପାରି ମାର୍ଥା ତାକୁ ଟେବୁଲ ପାଖରୁ ଟାଣି ନେଇ ତଳେ ବସାଇ ଦେଲା । ଭୂତ ସରଦାର ଆବାକାବା ହୋଇଗଲା । ଏହି ସମୟରେ ଆଇଭାନର ସ୍ତ୍ରୀ ଆସି କହିଲା, "ତୁମେ ଭଦ୍ରଲୋକ ପରି ଦିଶୁଛ । ଖୁବ୍ ଚକଚକିଆ ପୋଷାକ ପିନ୍ଧିଛ ସତ; କିନ୍ତୁ ମୋ ନଣନ୍ଦ ତୁମକୁ ଟେବୁଲ ଉପରେ ଭଲଖାନା ଦେଲା ନାହିଁ ବୋଲି ମନ ଦୁଃଖ କରିବାର କାରଣ ନାହିଁ । ଯାହା ହାତରେ ବଣ୍ଡି ବସି ନ ଥାଏ, ତାକୁ ଆମ ଘରେ ଟେବୁଲରେ ଖାନା ଦିଆଯାଏ ନାହିଁ । ତୁମେ ଟିକିଏ ଅପେକ୍ଷା କର । ସମସ୍ତେ ଖାଇ ସାରିଲେ ଯେଉଁ ଅଇଁଠା ବଳିବ, ତାହା ତୁମକୁ ଦିଆଯିବ ।"

ସନାଘରକୁ ଆସି ଘୁଷୁରି ଭଳି ଅଇଁଠା ଖାଇବାକୁ ହେବ, ଏହା ଚନ୍ଦ୍ରାକର ଭୂତ ସରଦାର ଆଇଭାନକୁ କହିଲା, ମୁଁ ଦେଖିଛି, ତୁମ ଦେଶର ଏକ ବଡଜ ଆଇନ ହେଉଛି ଯେ ପ୍ରତ୍ୟେକ ଲୋକ ନିଜ ହାତରେ କାମ କରିବାକୁ ବାଧ୍ୟ । ଏପରି ନିୟମଦ୍ୱାରା ତୁମର ନିର୍ବୋଧତା ପ୍ରକାଶ ପାଉଛି । ଲୋକେ କଅଣ ଖାଲି ହାତରେ କାମ କରନ୍ତି ? ଜ୍ଞାନୀଲୋକମାନେ କାହିଁରେ କାମ କରନ୍ତି ?”

ଆଇଭାନ କହିଲା, “ଆମେମାନେ ନିର୍ବୋଧ । ଜ୍ଞାନୀ ଲୋକେ କାହିଁରେ କାମ କରନ୍ତି ଆମକୁ ଜଣା ନାହିଁ । ଆମେ ନିଜ ନିଜର ହାତ, ଗୋଡ଼ ପିଠିରେ ଆମର ସବୁ କାମ କରିଥାଉଁ ।”

ଭଦ୍ରବେଶୀ ଭୂତ ସରଦାର କହିଲା, ଏଥିର କାରଣ ହେଉଛି, ତୁମେମାନେ ନିର୍ବୋଧ । ମୁଣ୍ଡରେ କିପରି କାମ କରାଯାଇ ପାରେ, ତାହା ମୁଁ ଶିଖାଇ ଦେବି । ମୋ ହାତରେ କାମ କରି ବଣ୍ଡି ବସିନାହିଁ ବୋଲି ତୁମେ ମୋତେ ଖାଇବାକୁ ଦେଉନାହଁ । ହାତ ଅପେକ୍ଷା ମୁଣ୍ଡରେ କାମ କରିବା ଯେ ଅଧିକ ଲାଭଜନକ, ତାହା ମୁଁ ଦେଖାଇ ଦେବି ।”

ଆଇଭାନ ଆଶ୍ଚର୍ଯ୍ୟ ହୋଇ କହିଲା, “ଯଦି ମୁଣ୍ଡରେ ହାତଠାରୁ ବେଶି କାମ କରି ହେବ, ତେବେ ନିଶ୍ଚୟ ତୁମ କଥାର ମୂଲ୍ୟ ଅଛି ।

ଏ କଥାରେ ଭୂତ ସରଦାର ସାହାସ ପାଇ କହିଲା, “କଥା ହେଉଛି, ହାତରେ କାମ କରିବା ସହଜ; ମୁଣ୍ଡରେ କାମ କରିବା ସେତେ ସହଜ ନୁହେଁ । ମୋ ହାତରେ ବଣ୍ଡି ବସି ନାହିଁ ବୋଲି ମୋତେ ଖାଇବାକୁ ଦେଉନାହଁ; କିନ୍ତୁ ମୁଣ୍ଡରେ ମୁଁ ଯେଉଁ କାମ କରୁଛି, ତାହା ଶହେ ଗୁଣରେ କଷ୍ଟକର । ବେଳେବେଳେ କାମ କରି ମୁଣ୍ଡ ଦୁ’ ଫାଳ ହୋଇଯାଏ ।”

ଆଶ୍ଚର୍ଯ୍ୟ ହୋଇ ଆଇଭାନ କହିଲା, “ମୁଣ୍ଡରେ କାମ କରିବା ଯେବେ ଏତେ କଠିନ, ତେବେ ନିଜକୁ କଷ୍ଟ ଦେଇ ତୁମେ ତାହା କରୁଛ କାହିଁକି ? ହାତ, ଗୋଡ଼ରେ ତ ସହଜରେ କାମ କରି ପାରନ୍ତ ।”

ଭୂତ ସରଦାର କହିଲା, “ତୁମ ଭଳି ନିର୍ବୋଧଙ୍କ ଉପରେ ଦୟା ଆସିବାରୁ ମୋତେ ମୁଣ୍ଡରେ କାମ କରିବାକୁ ହେଉଛି । ମୁଁ ନିଜକୁ କଷ୍ଟ

ନ ଦେଲେ ତୁମେମାନେ କାଳକାଳକୁ ନିର୍ବୋଧ ହୋଇ ରହିବ । ମୁଁ ନିଜେ ମୁଣ୍ଡରେ କାମ କରୁଛି; ତୁମମାନଙ୍କୁ ତା'ହା ଶିଖାଇ ଦେବି ।"

ଆଇଭାନ ବିସ୍ମିତ ହୋଇ କହିଲା, "ତାହା ଶୀଘ୍ର ଶିଖାଇ ଦିଅ । ଖାଲି ହାତରେ କାମ କରି କରି ବେଳେବେଳେ ଆମ ହାତ ଅଚଳ ରହିଯାଏ । ସେତେବେଳେ ଆମେ ବସି ନ ରହି ମୁଣ୍ଡରେ କାମ କରି ପାରିବୁ ।

ଭୂତ ସରଦାର ରାଜ୍ୟର ଲୋକଙ୍କୁ ମୁଣ୍ଡରେ କିପରି କାମ କରିହେବ ତା'ହା ଶିଖାଇ ଦେବ ବୋଲି କହି ଆଇଭାନଠାରୁ ବିଦାୟ ନେଲା ।

ଆଇଭାନ ରାଜ୍ୟରେ ଘୋଷଣା ଦେଲା, "ଆମ ରାଜ୍ୟକୁ ଜଣେ ଭଦ୍ରଲୋକ ଆସିଅଛନ୍ତି । ମୁଣ୍ଡରେ କିପରି କାମ କରି ହୁଏ, ତାହା ଶିଖାଇ ଦେବେ । ହାତରେ ଯେତେ କାମ ହେଉଛି, ମୁଣ୍ଡରେ ତହିଁରୁ ଅଧିକ କାମ ହେବ । ଲୋକେ ଆସି ଏହି ଉପାୟ ଶିଖି ଯାଆନ୍ତୁ ।"

ସେ ରାଜ୍ୟରେ ଗୋଟିଏ ବଡ଼ଘର ଥିଲା । ଏହା ଖୁବ୍ ଉଚ୍ଚ ଓ ଏହାର ଆଗକୁ ଯିବା ପାଇଁ ଅନେକ ପାହାଚ ଥିଲା । ସବା ଉପରେ ଗୋଟିଏ ବତୀ ଜଳୁଥିଲା । ଆଇଭାନ ଭଦ୍ରଲୋକଟିକୁ ବଡ଼ଘର ଆଗରେ ଛିଡ଼ା କରାଇ ଦେଲା, ଯେପରି ସବୁ ଲୋକେ ଏହି ଅଦ୍ଭୁତ ଲୋକଟିକୁ ଦେଖିପାରିବେ । ଭୂତ ସରଦାର ବଡ଼ଘର ଆଗରେ ଛିଡ଼ା ହୋଇ ବକ୍ତୃତା ଦେବାକୁ ଲାଗିଲା । ରାଜ୍ୟର ସହସ୍ର ସହସ୍ର ଲୋକ ବଡ଼ଘର ଚାରିପାଖେ ରୁଣ୍ଡହୋଇ ଲୋକଟିକୁ ଦେଖିଲେ । ସେମାନେ ଭାବିଥିଲେ ଯେ ଭଦ୍ରଲୋକ ମୁଣ୍ଡରେ କାମ କିପରି କରାଯାଏ, ତାହା ଦେଖାଇ ଦେବ; କିନ୍ତୁ ତାହା ନ କରି କେବଳ ଗୁଡ଼ାଏ ଗପୁଥିବାର ଦେଖାଗଲା । ସେ ଯାହା କହୁଥିଲା, ତାର ସାରମର୍ମ ହେଲା— ତୁମେମାନେ ଆଦୌ କାମ ନ କରି ଭଲ ଭାବରେ ବଞ୍ଚି ପାରିବ । ସେମାନେ ବିରକ୍ତ ହୋଇ ନିଜ ନିଜ କାମ ଧନ୍ଦାରେ ଲାଗିବାକୁ ଚାଲିଗଲେ ।

ନୂଆ ନୂଆ ଲୋକ ମୁଣ୍ଡରେ କାମ କରିବାର ଉପାୟ ଶିଖିବାକୁ ଆସୁଥାନ୍ତି; ଏଣେ ଭଦ୍ରଲୋକ ବଡ଼ଘର ଆଗରେ ଛିଡ଼ା ହୋଇ ବକ୍ତୃତା ଦେଉଥାନ୍ତି । ଲୋକେ ଶୁଣି ଶୁଣି କିଛି ବୁଝି ନ ପାରି ଚାଲି ଯାଉଥାନ୍ତି ।

ଦିନେ ଗଲା, ଦୁଇ ଦିନ ଗଲା । ଭଦ୍ର ଲୋକ ବକ୍ତୃତା ଦେଉଥାଏ । ଏହିପରି ଛିଡ଼ା ହୋଇ ଗର୍ଜି ଗର୍ଜି ସେ ଭୋକରେ ଆଁଟୁପାଟୁ ହୋଇଗଲା । ତା ପାଇଁ କେହି କିଛି ଖାଇବା ଜିନିଷ ଆଣି ଦେଲେନାହିଁ । ଏଥିର ଏକ ବିଶେଷ କାରଣ ଥିଲା । ସେମାନେ ଭାବିଲେ, "ଯେଉଁ ଲୋକ ମୁଣ୍ଡରେ ହାତ ଅପେକ୍ଷା ଏତେ ଅଧିକ କାମ କରୁଛି ବୋଲି କହୁଛି, ସେ ନିଶ୍ଚୟ ତା ନିଜର ଖାଦ୍ୟ ପାଇଁ ବ୍ୟବସ୍ଥା କରି ନ ଥିବ ?

ଲୋକଙ୍କର ଆସିବା ଯିବା ଲାଗିଥାଏ । ଦିନ ଦିନ ଧରି ଭଦ୍ରଲୋକର ବକ୍ତୃତା ମଧ୍ୟ ଚାଲିଥାଏ । କେତେକ ଲୋକ ଚାଲିଯାଉଥିବାର ଦେଖି ଆଇଭାନ ସେମାନଙ୍କୁ ପଚାରିଲା, "ସେ ଭଦ୍ରଲୋକ ତା ମୁଣ୍ଡରେ କାମ କରିବା ଆରମ୍ଭ କଲଣି ?"

"ନା, ଏତେବେଳଯାଏ ଆରମ୍ଭ କରିନାହିଁ । ତା ତୁଣ୍ଡରୁ ଖାଲି ଗୁଡ଼ାଏ ଶବ୍ଦ ବାହାରୁଛି ।

ଭୂତ ସରଦାର ଆହୁରି ଦିନେ ବଣ୍ଡାଘର ଉପରେ ଛିଡ଼ା ହୋଇ ବକ୍ତୃତା ଦେଲା । ଏତେ ଦିନ ହେଲା ଖାଇ ନ ଥିବାରୁ ସେ ଖୁବ୍ ଦୁର୍ବଳ ହୋଇଗଲା । ତା ମୁଣ୍ଡ ବୁଲିଲା । ସେ ପଡ଼ିଗଲାବେଳକୁ ତା ମୁଣ୍ଡ କାନ୍ଥରେ ପିଟି ହୋଇଗଲା । ଜଣେ ଲୋକ ଏହା ଦେଖି ଦଉଡ଼ି ଯାଇ ଆଇଭାନର ସ୍ତ୍ରୀକୁ କହିଲା, "ସେ ଲୋକ ବଣ୍ଡା ଘର କାନ୍ଥରେ ମୁଣ୍ଡ ପିଟୁଛି । ସେ ମୁଣ୍ଡରେ କାମ କରିବା ଆରମ୍ଭ କଲାଣି ।

ଆଇଭାନ କ୍ଷେତରେ ହଳ କରୁଥିଲା । ତା ସ୍ତ୍ରୀ ଦଉଡ଼ି ଯାଇ କହିଲା, "ଶୀଘ୍ର ଆସ । ଶୁଣିଲି ସେ ଭଦ୍ର ଲୋକ ମୁଣ୍ଡରେ କାମ କଲାଣି ।"

ଆଇଭାନ ବିସ୍ମିତ ହୋଇ ହଳ କାମ ବନ୍ଦ କଲା ଓ ବଣ୍ଡାଘର ପାଖକୁ ଆସିଲା । ସେ ଦେଖିଲା ସେ ଭଦ୍ରଲୋକଟି ଗଡ଼ି ଗଡ଼ି ଗୋଟିଏ ଗୋଟିଏ ପାହାଚ ତଳକୁ ଆସୁଛି । ପାହାଚରେ ପିଟି ହୋଇ ତାର ମୁଣ୍ଡରୁ ରକ୍ତ ବୋହୁଛି । ଏହି ଦୃଶ୍ୟ ଦେଖି ସେ କହିଲା, "ଭଦ୍ର ଲୋକଟି ସତ କହୁଥିଲା । ମୁଣ୍ଡରେ କାମ କରିବା କଠିନ, ବେଳେବେଳେ ମୁଣ୍ଡ ଫାଟି ଯାଏ । ହାତରେ କାମ କଲେ ବେଳେ ବେଳେ ଆମ ହାତରେ ଫୋଟକା ହୋଇଯାଏ, ତା

ମନକୁ ପୁଣି ଭଲ ହୋଇଯାଏ; କିନ୍ତୁ ମୁଣ୍ଡରେ ଏ ଯେଉଁ କାମ ଯେଉଁଥିରେ ଘାଆ ହେବ, ଫୁଲା ଅନେକ ଦିନ ଯାଏ ରହିବ ।”

ଶେଷକୁ ଭୂତ ସରଦାରର ସବା ତଳ ପାହାଚରୁ ଗଡ଼ି ଭୂଇଁରେ ପଡ଼ିଲା । ଭଦ୍ରଲୋକ କେତେ କାମ କରନ୍ତି, ଦେଖିବାପାଇଁ ଆଇଭାନ ତା ପାଖକୁ ଯାଉଥିଲା । କିନ୍ତୁ ହଠାତ୍ ଭୂଇଁ ଫାଟି ମେଲା ହୋଇଗଲା ଓ ଭଦ୍ରଲୋକ ତା ଭିତରକୁ ପଶିଗଲେ । ସେଠାରେ ଗୋଟିଏ ଟାଙ୍କ ଛଡ଼ା ଆଉ କିଛି ରହିଲା ନାହିଁ ।

ଆଇଭାନ ଦୁଷ୍ଟ ଭୂତମାନଙ୍କ କଥା ମନେ ପକାଇ କହିଲା, “ଏତ ସେଇଥିରୁ ଗୋଟାଏ । କେଡ଼େ ବଦମାସ । ଏଇଟା ଭୂତମାନଙ୍କର ସରଦାର ହୋଇଥିବ ।”

ଆଇଭାନ ଏବେ ମଧ୍ୟ ବଞ୍ଚିଛି । ତାର ଦୁଇ ଭାଇ ଓ ଦୁଇ ଭାଉଜ ଆସି ତାହା ପାଖରେ ରହିଛନ୍ତି । ସେମାନଙ୍କର କିଛି ଅଭାବ ନାହିଁ । ଲୋକେ ସୁଖରେ ରହିବା ପାଇଁ ତା ରାଜ୍ୟକୁ ବହୁ ସଂଖ୍ୟାରେ ଆସୁଅଛନ୍ତି । ତା ଘରକୁ ଆସି ଯେ କେହି ଖାଇବାକୁ ମାଗିଲେ ସେ କହେ, “ହଉ ଭଲ କଥା । ତୁମେ ଆସି ଆମ ସାଥିରେ ରହ । ଆମର ଖାଇବା ଜିନିଷର ଅଭାବ ନାହିଁ ।

କିନ୍ତୁ ତା ରାଜ୍ୟରେ ଗୋଟିଏ ଅଦ୍ଭୁତ ପ୍ରଥା ଚଳି ଆସୁଅଛି । ଯେଉଁମାନେ ଖାଇବାକୁ ମାଗନ୍ତି, ସେମାନଙ୍କର ହାତରେ କାମ କରି ବଣ୍ଡି ବସିଥିଲେ ତାକୁ ଟେବୁଲରେ ଭଲ ଖାନା ଦିଆଯାଏ । ଅଥଚ ଯାହା ହାତରେ ବଣ୍ଡି ନ ଥାଏ, ତାକୁ ଅନ୍ୟମାନଙ୍କର ଅଇଁଠା ଖାଇବାକୁ ହୁଏ ।

